# ବିସ୍ଫୋରିତ ପୃଥିବୀ

ପ୍ରମୋଦ କୁମାର ମହାପାତ୍ର



# ବିସ୍ଫୋରିତ ପୃଥିବୀ

ଲେଖକ
ପ୍ରମୋଦ କୁମାର ମହାପାତ୍ର
ମୁଖ୍ୟ ସହ ସଂପାଦକ, 'ସମାଜ' ଗୋପବନ୍ଧୁ ଭବନ, କଟକ - ୭୫୩ ୦୦୧

*ପ୍ରକାଶକ*
ବିଶ୍ୱ ବୁକ୍‌ସ
ବାଲୁବଜାର, କଟକ - ୭୫୩ ୦୦୨
*ପ୍ରାପ୍ତିସ୍ଥାନ :*
ଓଡ଼ିଶା ବୁକ୍ ଷ୍ଟୋର
ବିନୋଦ ବିହାରୀ, କଟକ - ୭୫୩ ୦୦୨

*ପ୍ରଚ୍ଛଦ :* ଶଶୀକାନ୍ତ ରାଉତ

*ଅକ୍ଷର ସଜ୍ଜା :* ଆଇ.ସି.ଇ.ଟି

ପ୍ରଥମ ପ୍ରକାଶ - ନବବର୍ଷ ୧୯୯୯

*ମୁଦ୍ରଣ :* ଇନ୍ଦ୍ରାଣୀ ଅଫ୍‌ସେଟ୍, କଟକ - ୭୫୩ ୦୦୯

BISPHORITA PRUTHIVI

*by*

**Pramod Kumar Mohapatra, M.Sc**

**Published by**
**BISWA BOOKS**
**Balu Bazar, Cuttack - 753 002**
**Available at :**
**ORISSA BOOK STORE**
**Binod Behari, Cuttack - 753 002**
**1st Edition**
**New Year, 1999**

PRICE : Rs. 45/- Only
ISBN 81-86091-01-7

# ପ୍ରାକ ସୂଚନା

ବିଶ୍ୱବ୍ରହ୍ମାଣ୍ଡରେ ଆମର ବାସସ୍ଥଳୀ ପୃଥିବୀର ସ୍ଥିତି ନଗଣ୍ୟ । ସୂର୍ଯ୍ୟପରି କୋଟିକୋଟି ନକ୍ଷତ୍ର, ଅସୁମାରୀ ଗ୍ରହ ଓ ମହାଜାଗତିକ ପିଣ୍ଡର ସମାରୋହରେ ବିଶ୍ୱବ୍ରହ୍ମାଣ୍ଡ ଗଠିତ । ତେବେ ପୃଥିବୀର ବିଲୟନେଇ ଆମର ଧର୍ମ ପୁସ୍ତକରେ ଅନେକ ବିଷୟ ବର୍ଣ୍ଣିତ ହୋଇଥିଲେ ମଧ୍ୟ ମହାକାଶଆଡ଼ୁ ଯେ ଆମ ପ୍ରତି ସବୁ ସମୟରେ ବିପତ୍ତି ରହିଛି ଏହାକୁ ଅସ୍ୱୀକାର କରାଯାଇ ପାରିବ ନାହିଁ । ଏକ ଧୂମକେତୁର ପୃଥିବୀସହ ସଂଘର୍ଷ ଦ୍ୱାରା ସୃଷ୍ଟ ହୋଇଥିବା ବିଭୀଷିକା ଯୋଗୁ ଡାଇନୋସର ଭଳି ବିରାଟକାୟ ଜୀବ ପୃଥିବୀ ପୃଷ୍ଠରୁ ସମୁଳେ ବିଲୟ ପ୍ରାପ୍ତ ହୋଇଗଲେ । ପ୍ରତ୍ୟେକ ଦିନ ଅନେକ କ୍ଷୁଦ୍ରତିକ୍ଷୁଦ୍ର ମହାଜାଗତିକ ପିଣ୍ଡ ପୃଥିବୀ ଉପରେ ଖସିପଡୁଥିଲେ ମଧ୍ୟ ଏହାର ଆକାର ଅତ୍ୟନ୍ତ କ୍ଷୁଦ୍ର ହୋଇଥିବାରୁ ଏହାକୁ ଆମେ ବାରିପାରୁ ନାହୁଁ । କିନ୍ତୁ ଯଦି ଏହି ପିଣ୍ଡର ଆକାର ବୃହତ୍ ହୁଏ ଓ ଧୂମକେତୁର ଯଦି ପୃଥିବୀ ସହ ସଂଘର୍ଷ ଘଟେ ତେବେ ଅବସ୍ଥା କଣ ହେବ ସେ ସଂପର୍କରେ ଏହି ଉପନ୍ୟାସରେ ମୁଁ ସାଧାରଣଙ୍କୁ ଜଣାଇଦେବାକୁ ଚେଷ୍ଟା କରିଛି । ୧୯୯୪ ମସିହାରେ ଏକ ଖଣ୍ଡବିଖଣ୍ଡିତ ଧୂମକେତୁ ସୁମେକର ଲେଭିର ବୃହସ୍ପତି ଗ୍ରହ ସହ ସଂଘର୍ଷ ଓ ତଦ୍‌ଜନୀତ ପୃଥିବୀ ଆକାରର ବୃହସ୍ପତି ଗ୍ରହ ପୃଷ୍ଠରେ ଗହ୍ୱର ସୃଷ୍ଟିର ଚିତ୍ର ଆମେ ପୃଥିବୀବାସୀ ଦେଖିସାରିବାପରେ ପୃଥିବୀ ଯେ ଆଗାମୀ ଦିନରେ ଏପରି ସମସ୍ୟାର ସମ୍ମୁଖୀନ ନ ହେବ ତାହା କେହି ଅସ୍ୱୀକାର କରିପାରିବେ ନାହିଁ । ଧୂମକେତୁ ସ୍ୱିଫ୍ଟ ଟଟଲର ପୃଥିବୀସହ ୨୧୧୬ ମସିହାରେ ସଂଘର୍ଷ ଘଟିବାର ସମ୍ଭାବନା ନେଇ ବିଶ୍ୱର କେତେଜଣ ବୈଜ୍ଞାନିକ ଘୋଷଣା କରିଥିବାବେଳେ ଏବେ ଏହା ପୃଥିବୀସହ ସଂଘର୍ଷ ଏଡାଇଯିବ ବୋଲି ଜଣାପଡିଲାଣି । ତେବେ ଏ ପ୍ରକାର ସମସ୍ୟା ଆମ ପ୍ରତି ଯେ ରହିଛି ଏହା ଆମକୁ ସ୍ୱୀକାର କରିବାକୁ ହେବ ।

ଏହି ଉପନ୍ୟାସରେ ପୃଥିବୀ ସହ ଏକ ଧୂମକେତୁ ସଂଘର୍ଷର କାଳ୍ପନିକ ଚିତ୍ର ବର୍ଣ୍ଣନା କରାଯାଇ ଏଥିରୁ ବୈଜ୍ଞାନିକମାନଙ୍କ ଚେଷ୍ଟାଦ୍ୱାରା କିପରି ପୃଥିବୀକୁ ରକ୍ଷା



## ପ୍ରମୋଦ କୁମାର ମହାପାତ୍ରଙ୍କ ଦ୍ୱାରା ଲିଖିତ ଲୋକପ୍ରିୟ ବିଜ୍ଞାନ ଓ ଅନ୍ୟାନ୍ୟ ପୁସ୍ତକ



| କ୍ର.ନ. | ପୁସ୍ତକ | | ମୂଲ୍ୟ |
|---|---|---|---|
| ୧ । | ବିଶ୍ୱ ବିସ୍ମୟ (ଶ୍ରେଷ୍ଠ ଲୋକପ୍ରିୟ ବିଜ୍ଞାନ ପୁସ୍ତକ ରୂପେ ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ସ୍ୱର୍ଣ୍ଣ ପଦକ ପ୍ରାପ୍ତ) | ଟ. | ୧୫.୦୦ |
| ୨ । | ବିଂଶ ଶତାବ୍ଦୀର ପୃଥିବୀ | ଟ. | ୨୦.୦୦ |
| ୩ । | ଉଦ୍ଭିଦର କିଏ କ'ଣ ? | ଟ. | ୬.୦୦ |
| ୪ । | ଓଡ଼ିଶାର ଔଷଧ ବୃକ୍ଷ | ଟ. | ୨୦.୦୦ |
| ୫ । | ଆଜିର ଆମେରିକା (ଆମେରିକା ଭ୍ରମଣ କାହାଣୀ) | ଟ. | ୫୦.୦୦ |
| ୬ । | ଶତାବ୍ଦୀ ସାଧକ ('ସମାଜ' ସଂପାଦକ ଡକ୍ଟର ରାଧାନାଥ ରଥଙ୍କ ଜୀବନୀ) | | ୫୦.୦୦ |
| ୭ । | ବିଜ୍ଞାନ ଯୁଗର ମାଳିକା | ଟ. | ୧୫.୦୦ |
| ୮ । | କାମୋଡୋ ଦ୍ୱୀପର ଡ୍ରାଗନ (ବିଜ୍ଞାନ ଉପନ୍ୟାସ) | ଟ. | ୧୬.୦୦ |
| ୯ । | ଚାଲିଯିବା ଆମେରିକା (ଶିଶୁ ଭ୍ରମଣ କାହାଣୀ) | ଟ. | ୧୨.୦୦ |
| ୧୦ । | ଶତାବ୍ଦୀର ଶ୍ରେଷ୍ଠ ବିଜ୍ଞାନ କଥା | ଟ. | ୨୦.୦୦ |
| ୧୧ । | ଜନ ସେବକ ରାଧାନାଥ ରଥ (ସଂକ୍ଷିପ୍ତ ଜୀବନୀ) | ଟ. | ୧୦.୦୦ |
| ୧୨ । | ବିଭୀଷିକାମୟ ମଙ୍ଗଳ ଯାତ୍ରା | ଟ. | ୩୫.୦୦ |
| ୧୩ । | ଆଜିର ବିଜ୍ଞାନ (ବିଜ୍ଞାନ ଏକଡେମୀ ପୁରସ୍କାର ପ୍ରାପ୍ତ) | ଟ. | ୩୦.୦୦ |
| ୧୪ । | ଏକବିଂଶ ଶତାବ୍ଦୀର ବିଜ୍ଞାନ | ଟ. | ୩୫.୦୦ |
| ୧୫ । | ଗଛ ବଞ୍ଚିଲେ ଆମେ ବଞ୍ଚିବା | ଟ. | ୫.୦୦ |
| ୧୬ । | ଭାଗବତ ଟୁଙ୍ଗୀରେ ସନ୍ଧ୍ୟା | ଟ. | ୫.୦୦ |
| ୧୭ । | ଆମ ପରିବେଶ (ଅନୁବାଦ) | ଟ. | ୩୪.୦୦ |
| ୧୮ । | ଜୀବଜଗତର ବିସ୍ମୟ | ଟ. | ୨୦.୦୦ |
| ୧୯ । | ଜୀବନ୍ତ ଜଗନ୍ନାଥ (ସତ୍ୟ ଘଟଣା ଉପରେ ଆଧାରିତ) | ଟ. | ୨୫.୦୦ |
| ୨୦ । | ମହାକାଶକୁ ଯାତ୍ରା (ପ୍ରଥମ ଭାଗ) | ଟ. | ୫.୦୦ |
| ୨୧ । | ମହାକାଶକୁ ଯାତ୍ରା (ଦ୍ୱିତୀୟ ଭାଗ) | ଟ. | ୫.୦୦ |
| ୨୨ । | ଘର ଭିତରେ କଙ୍କାଳ' | ଟ. | ୮.୦୦ |
| ୨୩ । | ଆମ ପୃଥିବୀ | ଟ. | ୮.୦୦ |
| ୨୪ । | ଅଜଣା ଗ୍ରହରେ ଜନ ଓ ମେରୀ (ବିଜ୍ଞାନ ଉପନ୍ୟାସ) | ଟ. | ୩୦.୦୦ |
| ୨୫ । | ନୀଳ ସାଗରର ଆତ୍ମଲିପି | ଟ. | ୩୫.୦୦ |
| ୨୬ । | ଝିଟିପିଟି କହେ (ସଂପାଦିକ) | ଟ. | ୬୦.୦୦ |
| ୨୭ । | ମଣିଷ ଶିକାର (କ୍ଷୁଦ୍ର ଗଳ୍ପ) | ଟ. | ୪୫.୦୦ |
| ୨୮ । | ଶ୍ରେଷ୍ଠ ବିଜ୍ଞାନ ଗଳ୍ପ | ଟ. | ୪୦.୦୦ |
| ୨୯ । | ବିସ୍ଫୋରିତ ପୃଥିବୀ (ବିଜ୍ଞାନ ଉପନ୍ୟାସ) | ଟ. | ୪୫.୦୦ |
| ୩୦ । | ବିବର୍ତ୍ତିତ ପୃଥିବୀ | ଟ. | ୨୦.୦୦ |
| ୩୧ । | ଡେପୁଟି ମାଜିଷ୍ଟ୍ରେଟ (ନବ ସାକ୍ଷରଙ୍କ ପାଇଁ) | ଟ. | ୮.୦୦ |

# ସେନିଗଲର ସାଗରବେଳା

ଦିଗବଳୟ ଯାଏ ଲମ୍ବିରହିଛି ରାଶିରାଶି ଚୂନା ବାଲିର ସମ୍ଭାର । ଯେଉଁଆଡେ ଚାହିଁଲେ ବାଲୁକା ସାମ୍ରାଜ୍ୟର ଅଖଣ୍ଡ ଅବସ୍ଥିତି । ପୂର୍ଣ୍ଣମୀର ପୂର୍ଣ୍ଣଚନ୍ଦ୍ର ଦିଗବଳୟ ଛାଡ଼ି ଆକାଶପଥର ଯାତ୍ରୀ ହେଲାଣି । ବାଲିପାହାଡର କୋଡଛାଡି ରାତ୍ରିର ଚନ୍ଦ୍ର କ୍ରମେ ନିଜର ଶୁଭ୍ରଦୀପ୍ତ, ଶୀତଳ ଆଲୋକ ପୃଥିବୀ ପୃଷ୍ଠରେ ଖେଳାଇବାର ଉପକ୍ରମରେ ବ୍ୟସ୍ତ । ଖୁବ୍ ନିକଟରେ ନୀଳ ଆଟ୍‌ଲାଣ୍ଟିକ ମହାସାଗର । ସାଗରବେଳାରୁ ବହି ଆସୁଛି ଧୀର ଶୀତଳ ପବନ । ବାଲୁକାରାଶି ଦିନରେ ପ୍ରଚଣ୍ଡ ରୌଦ୍ର ତାପରେ ଯେପରିଭାବେ ହଠାତ୍ ତାତିଯାଏ, ରୌଦ୍ର ହୋଇଉଠେ ଏହାର ଶରୀର ସେହିପରି ସୂର୍ଯ୍ୟଦେବତାଙ୍କ ବିଦାୟ ସହିତ ଖୁବ୍ ଶୀଘ୍ର ମଧ ଥଣ୍ଡା ହୋଇଯାଏ । ଅସୁମାରୀ ପୃଥିବୀର ବୈଚିତ୍ର୍ୟ । ପ୍ରକୃତିରାଣୀର ଶୋଭା ସମ୍ଭାରର ସତେ ଯେପରି ଶେଷ ନାହିଁ । ଏହି ମରୁକ୍ଷେତ୍ର ପୃଥିବୀର ସର୍ବବୃହତର ମରୁଭୂମି ସାହାରା । ଯାହାର ନାଁ ଶୁଣିଲେ ମଧ ଲୋକେ ଭୟଭୀତ ହୋଇଯାଆନ୍ତି । ଆଫ୍ରିକା ମହାଦେଶର ପ୍ରାୟ ଅଧେ ଅଞ୍ଚଳରେ ବିସ୍ତୃତ ଏହି ବାଲୁକା ସାମ୍ରାଜ୍ୟର ଆକାର ଯେପରି ସର୍ବବ୍ୟାପୀ, ଏହାର ବିସ୍ମୟ ମଧ ତତୋଽଧିକ । କେତେବେଳେ ଏହା ଶୀତଳ ତ ପୁଣି ହଠାତ୍ କେତେବେଳେ ମରୁ ଝଡ଼ସହ ହୋଇଉଠେ ଉଗ୍ର । ପ୍ରଚଣ୍ଡ ବେଗଗାମୀ ବାୟୁ ଏହା ପୃଷ୍ଠରେ ସୃଷ୍ଟିକରେ ପ୍ରଳୟର ରୂପରେଖ । ଯେଉଁଠାରେ ଥାଏ ସମତଳ ବାଲୁକା ରାଶି ସେଠାରେ ହଠାତ୍ ମୁଣ୍ଡଟେକେ ବାଲିର ପାହାଡ । କେତେ ମରୁ ଯାତ୍ରୀ ଯଦି ବା ଦୈବାତ୍ ଏହି ମରୁଝଡର ସମ୍ମୁଖୀନ ହୁଅନ୍ତି ତେବେ ଏଥିରୁ ନିସ୍ତାର ପାଇ ଫେରିବା କଷ୍ଟକର ହୋଇଉଠେ ସେମାନଙ୍କ ପକ୍ଷରେ । ମଝିରେ ମଝିରେ ଅସୀମ ମରୁଭୂମି ଭିତରେ ପୁଞ୍ଜାଏ ଖଜୁର ଗଛ ନିରବରେ ଛିଡ଼ାହୋଇ ମରୁଦ୍ୟାନ ସୃଷ୍ଟିକରିଛି । ସାମାନ୍ୟ ଟିକେ ଜଳ କେତେକ କଣ୍ଟକିତ ଗଛ ଆଉ ସବୁ ମରୁ ଉଭିଦରାଜିରେ ପରିପୂର୍ଣ୍ଣ ଏହି ଉଦ୍ୟାନ ମରୁଯାତ୍ରୀପାଇଁ ମୁଖ୍ୟ ଆଶ୍ରୟସ୍ଥଳଭାବେ ପରିଚିତ । ମାସମାସ ଧରି ବୃକ୍ଷଲତାଙ୍କ ଦର୍ଶନରୁ ବଞ୍ଚିତ ହୋଇଥିବା ମରୁଯାତ୍ରୀମାନେ ଏହିଠାରେ ବେଳେବେଳେ ଆଶ୍ରୟ ନିଅନ୍ତି । ଖଜୁରି କୋଳିର ସୌନ୍ଦର୍ଯ୍ୟ ଦେଖି ମୁଗ୍ଧ ହୁଅନ୍ତି । ଜଳ

କଷ୍ଟ ଭୋଗୁଥିବା ଓଟ ମୁହଁରେ ପାଣି ମୁନ୍ଦିଏ ଦିଅନ୍ତି, ଶ୍ୟାମଳ ଉଦ୍ଭିଦରାଜିକୁ ଆଖିପୁରାଇ ଦେଖନ୍ତି ଆଉ ପରେ.ଗନ୍ତବ୍ୟ ପଥରେ ଆଗେଇ ଚାଲନ୍ତି ।

ସାହାରା ମରୁଭୂମିର ପଶ୍ଚିମପାର୍ଶ୍ୱରେ ଅବସ୍ଥିତ ମରୁରାଜ୍ୟ ସେନିଗଲ । ଆଫ୍ରିକା ମହାଦେଶର ଏକ କ୍ଷୁଦ୍ରାତିକ୍ଷୁଦ୍ର ଦେଶ । ଦେଶର ଅର୍ଦ୍ଧାଧିକ ଭାଗ ସାହାରା ଦ୍ୱାରା ଆକ୍ରାନ୍ତ । ଗୋଟିଏ ପାର୍ଶ୍ୱକୁ ସ୍ପର୍ଶ କରିଛି ଆଟ୍‌ଲାଣ୍ଟିକ ମହାସାଗର । ସାଗର କୂଳକୁ ଲାଗିରହିଛି କେତୋଟି ଛୋଟବଡ଼ ସହର । ଏହି ସହର ଗୁଡ଼ିକ ମଧ୍ୟ ମରୁ ଉତ୍ପାତରୁ ମୁକ୍ତ ନୁହେଁ । ସହର ପାର୍ଶ୍ୱରୁ କିଛିଦୂର ଚାଲିଆସିଲେ ଆଖିରେ ପଡ଼େ ବିସ୍ତୀର୍ଣ୍ଣ ସାହାରାର ଭୟଙ୍କର ରୂପ । ଗୋଟିଏ ପଟେ ଦିଗ୍‌ବଳୟକୁ ସ୍ପର୍ଶକରିଛି ଆଟ୍‌ଲାଣ୍ଟିକର ନୀଳ ଜଳଧାରା ତ, ଅନ୍ୟପଟେ ଦିଗ୍‌ବଳୟଯାଏ ଲାଗିରହିଛି ବିସ୍ତୀର୍ଣ୍ଣ ବାଲୁକାରାଶି । ଦର୍ଶକ ଏକ ମଧ୍ୟବର୍ତ୍ତୀ ସ୍ଥାନରେ ଠିଆହୋଇ ଏହି ପ୍ରାକୃତିକ ଦୃଶ୍ୟ ଦେଖି ବିଭୋର ହୋଇଉଠେ । ଗୋଟିଏ ପଟେ ନୀଳ ଭିତ୍ତି ସଞ୍ଚାରକାରୀ ସାଗର ବକ୍ଷରୁ ଉଠୁଛି ଭୀମକାୟ ଉତ୍ତାଙ୍ଗ ଲହରୀମାଳା ଆଉ ଅନ୍ୟପଟେ ବାଲୁକା ପ୍ରାନ୍ତରରୁ ଆନ୍ଦୋଳିତ ହେଉଛି ପ୍ରଚଣ୍ଡ ମରୁଝଡର ତାଣ୍ଡବଲୀଳା । କେତେ ଭୀମ ଏଇ ପ୍ରକୃତି, ପୁଣି ବେଳେବେଳେ ଏହା କେତେ ଶାନ୍ତ, କମନୀୟ ଓ ସୌନ୍ଦର୍ଯ୍ୟମୟ ସତେ ! ରାତ୍ରିର ଶୀତଳ ଚନ୍ଦ୍ରମାର ଜୋତ୍ସ୍ନାସିକ୍ତ ଅପରୂପ ରୂପରେ ମଗ୍ନ ବୈଜ୍ଞାନିକ ଡେଭିଡ୍ କହିଉଠିଲେ ମନକୁମନ । ପାଖରେ ଅଛନ୍ତି ବୈଜ୍ଞାନିକ ରୋଜାଲିନା । ସେ ଯେ ତାଙ୍କର ସହକର୍ମୀ ବା କେବଳ ସହକାରୀ ତାହା ନୁହେଁ ପତ୍ନୀ ମଧ୍ୟ । ଜୋତ୍ସ୍ନା ବିଚ୍ଛୁରିତ ରାତ୍ରିର ରୂପ ସାହାରାର ପ୍ରଚଣ୍ଡ ବପୁ ଉପରେ ଶୋଇରହି ଉପଭୋଗ କରୁଥିଲେ ସ୍ୱାମୀ ସ୍ତ୍ରୀ ଉଭୟେ । ସୁଦୂର ଆମେରିକାର ଗହଳିପୂର୍ଣ୍ଣ ବୋଷ୍ଟନ ସହରରୁ ଆସିଛନ୍ତି ଏଇ ଦୁଇ ବୈଜ୍ଞାନିକ । ଏଠାରେ ନାଁ ଅଛି ଗହଳି ଚହଳି ନା ଅଛି ବୃହତ୍ତାକାର ସହର ବା ଅନ୍ୟ କିଛି କୋଳାହଳମୟ ଆକର୍ଷଣ । ସବୁ ଏଠାରେ ନୀରବ, ନିସ୍ପନ୍ଦ । ମାତ୍ର କେତେଲକ୍ଷ ଜନସଂଖ୍ୟା ବିଶିଷ୍ଟ ମରୁଦେଶ ସେନିଗଲ । ନିକଟରେ କ୍ଷୁଦ୍ର ସହରରୁ ଦେଖାଯାଉଛି ମରୁଭୂମିଦେଇ ଯାଇଥିବା ରାସ୍ତାକଡର କ୍ଷୀଣ ଆଲୋକ ବର୍ତ୍ତାଳୀ । ଚନ୍ଦ୍ରାଲୋକର ଝାପ୍‌ସା କିରଣରେ କିନ୍ତୁ ସ୍ୱଚ୍ଛ ବାରିହୋଇପଡୁଛି ନୂତନ ଭାବେ ସ୍ଥାପିତ ହୋଇଥିବା ବୃହତ୍ତ ଦୂରବୀକ୍ଷଣ ଯନ୍ତ୍ର । ମହାକାଶର ବିସ୍ମୟଭେଦ କରିବାକୁ ନିର୍ମିତ ହୋଇଥିବା ଏହି ବୃହତ୍ତ ଯନ୍ତ୍ରପିଣ୍ଡ ଦୂରବୀକ୍ଷଣ ଯନ୍ତ୍ର ସମସ୍ତ ପ୍ରକାର ଅତ୍ୟାଧୁନିକ ଜ୍ଞାନକୌଶଳରେ ନିର୍ମିତ । ପ୍ରାୟ ପାଞ୍ଚ ଏକର ସ୍ଥାନରେ ବାଲୁକା ଭୂଖଣ୍ଡରେ ସ୍ଥାପିତ ଏହି ଯନ୍ତ୍ର ଆକାଶର

ବହୁ ଉଚ୍ଚ ଯାଏ ବ୍ୟାପିରହିଛି । ନିକଟରେ ଅନେକ ସୌଧ । ଏହାର ପରିସରକୁ ଆବୃତକରି ରଖିଛି ଅତିଉଚ୍ଚ ସୁନ୍ଦର ପ୍ରାଚୀର । ପ୍ରାଚୀର କଡେକଡେ ଅନେକ ଉଜ୍ଜ୍ୱଳ ଆଲୋକ ଜଳୁଛି । ସତେଯେପରି ଏହି ସ୍ଥାନ ଆଲୋକ ସମ୍ଭାର ଦ୍ୱାରା ବାରି ହୋଇପଡୁଛି ଅନ୍ୟ ଅଞ୍ଚଳଠାରୁ । ଆକାଶକୁ ମୁଣ୍ଡଟେକି ରହିଥିବା ବୃହତ୍ତ ଦୂରବୀକ୍ଷଣ ଯନ୍ତ୍ରର ଆଗ୍ରଭାଗରେ ଜଳୁଛି ଦିବାରାତ୍ରୀ ନାଲି ରଙ୍ଗର ଏକ ଆଲୋକ୍ । ବିଚିତ୍ର ଏହି ପରିବେଶ, ଶାନ୍ତ ମରୁ ପ୍ରାନ୍ତରରେ ସତେ ଯେପରି ଏକ ବୃହତ ଆଲୋକ ବର୍ତ୍ତିକା ଜ୍ୱଳନ୍ତରହି ଏକ ବ୍ୟତିକ୍ରମ ସୃଷ୍ଟିକରୁଛି ।

ଡେଭିଡ୍ ଓ ରୋଜାଲିନା ଅନେକବେଳୁ ବାହାରି ଆସିଛନ୍ତି ମରୁଭୂମିଆଡେ । ସାରାଦିନ ଶୀତତାପ ନିୟନ୍ତ୍ରୀତ ଗବେଷଣାଗାର ଭିତରେ ସେମାନଙ୍କୁ କାର୍ଯ୍ୟ କରିବାକୁ ହୋଇଛି । ସେମାନଙ୍କ ଗବେଷଣା ପୁଣି ସୀମାହୀନ ମହାକାଶ ବିଷୟରେ ଯାହା ଅବ୍ୟକ୍ତ, ଅପରିସୀମ, ଅଜଣା, ଅସଂଖ୍ୟ ବିସ୍ମୟରେ ଭରପୁର । ସନ୍ଧ୍ୟା ଆଗରୁ ବାହାରି ଆସିଥିଲେ ଉଭୟ । ଚାଲିଚାଲି ମରୁଭୂମିର ବିସ୍ତୀର୍ଣ୍ଣତାକୁ କଳନା କରୁକରୁ ସେମାନେ ଚାଲି ଆସିଥିଲେ ଗବେଷଣାଗାରର ଦୂରବୀକ୍ଷଣ ଯନ୍ତ୍ରଠାରୁ ପ୍ରାୟ ଏକ କିଲୋମିଟର ଦୂର ଯାଏ । ବାଲୁକା ଉପରେ ଏକ ସତରଞ୍ଜି ପକାଇଦେଇ ସେଥିରେ ନିଜର ଅବଶ ଶରୀରକୁ ଗଡାଇ ଦେଇଥିଲେ ଡେଭିଡ୍ । ପାଖରେ ପତ୍ନୀ ରୋଜାଲୀନା ସ୍ୟାଣ୍ଡଉଇଚ୍ ପ୍ରସ୍ତୁତିରେ ବ୍ୟସ୍ତଥିଲେ । ଟିଫିନ୍ ବ୍ୟାଗ ଖୋଲି ସେ ସ୍ୟାଣ୍ଡଉଇଚ୍ ଓ କଫି ପ୍ରସ୍ତୁତ କରୁଥିଲେ ସ୍ୱାମୀଙ୍କ ପାଇଁ । ନିର୍ଜନତାକୁ ପ୍ରଚଣ୍ଡରୂପେ ଉପଭୋଗ କରିବାକୁ ହେଲେ ଖାଦ୍ୟପାନୀୟ ଯେ ସହଯୋଗୀ ପଦାର୍ଥ ଏହା ହୃଦୟଙ୍ଗମ କରୁଥିଲେ ପତିପତ୍ନୀ । ଶୁଭ୍ରଦୀପ୍ତ ଆକାଶରେ ପରିସ୍ଫୁଟ ହେଲେଣି କୋଟି କୋଟି ନକ୍ଷତ୍ର । ଅସୁମାରୀ ସେମାନଙ୍କର ସଂଖ୍ୟା, ଅକୁହା ସେମାନଙ୍କର ବିସ୍ମୟ, ଅଜଣା ସେମାନଙ୍କର ଅବସ୍ଥିତି, ସର୍ବୋପରି ଅନାମ ଏହି ନୈସର୍ଗିକ ବିସ୍ମୟକୁ ଖାଲି ଆଖିରେ ଦେଖିଚାଲିଥିଲେ ଡେଭିଡ୍ । ପୃଥିବୀର ଅନ୍ୟତମ ବୃହତ୍ତମ ଦୂରବୀକ୍ଷଣ ଯନ୍ତ୍ରରେ ଏମାନଙ୍କର ଚାଲିଚଳନ ସବୁବେଳେ ଦେଖୁଥିବା ଏହି ବୈଜ୍ଞାନିକ ଦମ୍ପତିଙ୍କୁ ମଧ୍ୟ ବିସ୍ମୟ ଓ ପୁଲକ ଆଣିଦେଉଥିଲା ଏହିଭଳି ସୌରପିଣ୍ଡର ଅବସ୍ଥିତି । ଡେଭିଡ୍ ଚିତ୍କାର କରିଉଠିଲେ ଦେଖ ରୋଜି ! ଓର୍ଟ ମେଘମାଳ ଅଞ୍ଚଳର କୋଟିକୋଟି ନକ୍ଷତ୍ର ସମ୍ଭାର କେତେ ଚମତ୍କାରଭାବେ ପରିସ୍ଫୁଟ ହେଲେଣି । ଆଜିର ଏ ନିର୍ମଳ ଆକାଶ କେତେ ଚମତ୍କାର ସତେ !

କେବଳ ନିର୍ମଳ ଆକାଶର ସୁବିଧାପାଇଁ ତ ଆମେ ଆସିଥିଲେ ସୁଦୂର ଆଫ୍ରିକାକୁ । ଆଫ୍ରିକାର ସାହାରା ମରୁଭୂମି ଅଞ୍ଚଳ ଯେଉଁଠାରେ ବର୍ଷବର୍ଷ ଧରି ବାଦଲଖଣ୍ଡେ ଆକାଶରେ ଦେଖିବା ସ୍ୱପ୍ନ, ସେହିପରି ସବୁବେଳେ ନିର୍ମଳ ଆକାଶ ଦେଖିବାର ସୁଯୋଗଥିବା ମରୁଭୂମି ରାଜ୍ୟ ସେନିଗଲରେ ସ୍ଥାପନ କରାଯାଇଛି ବିଶ୍ୱର ବୃହତ୍ତମ ଦୂରବୀକ୍ଷଣ ଯନ୍ତ୍ର । ଆମେରିକା, ୟୁରୋପ ଓ ବିଶ୍ୱର ଅନ୍ୟାନ୍ୟ ଅନେକ ଦେଶରେ ଆକାଶ ପର୍ଯ୍ୟବେକ୍ଷଣରେ ଅସୁବିଧା ସୃଷ୍ଟି ହୋଇଥାଏ । ତେଣୁ ବୈଜ୍ଞାନିକ ଗବେଷଣାପାଇଁ ନୀରବ ନିଶ୍ଚଳ ସର୍ବଦା ଉଜ୍ଜ୍ୱଳ ଆକାଶ ଦୃଶ୍ୟ ହେଉଥିବା ଏହି ଅଞ୍ଚଳ ହିଁ ସବୁଠାରୁ ଅଧିକ ଗ୍ରହଣୀୟ ।

ସତରଞ୍ଜି ଉପରେ ଶୋଇରହି ଅସୀମ ମହାକାଶକୁ କଳନା କରୁଥିଲେ ଡେଭିଡ୍ । ରୋଜାଲିନା କଫି ଓ ସ୍ୟାଣ୍ଡଉଇଚ୍ ଧରି ତାଙ୍କ ନିକଟରେ ବସିଲେଣି କେତେବେଳୁ । ଉଭୟ ଖାଇବା ଆରମ୍ଭ କଲେ । ରାତ୍ରି ଆଗତ ସହିତ ମରୁଭୂମି କ୍ରମେ ଶୀତଳ ହୋଇଆସୁଥିଲା । ସୁଲୁସୁଲିଆ ଥଣ୍ଡାପବନ ବୋହିଆସୁଥିଲା ଆଟ୍ଲାଣ୍ଟିକ ମହାସାଗର ଆଡୁ । ମରୁଭୂମିରେ ପବନ ଖେଳ ଯୋଗୁଁ ସୃଷ୍ଟି ହେଉଥିଲା ଅନେକ ବାଲିର ପିରାମିଡ୍, ଛୋଟବଡ଼ ବାଲି ପାହାଡ଼ । ଅଗଷ୍ଟମାସ । ଉତ୍ତରଦିଗରେ ସପ୍ତର୍ଷି ତାରକାମଣ୍ଡଳୀ କେତେବେଳୁ ଉଦୟ ହୋଇସାରିଲେଣି । ତାହା ତଳକୁ ଦିଗ୍‌ବଳୟ ଆଡକୁ ଶିଶୁମାର ଓ ବୃଷପର୍ବା ତାରକା ମଣ୍ଡଳୀ । ଧ୍ରୁବତାରା କ୍ରମେ ଅଧିକ ଉଜ୍ଜ୍ୱଳ ହେବାରେ ଲାଗିଲାଣି । ଦକ୍ଷିଣଦିଗକୁ ହାତ ଦେଖାଇ ବାସୁକୀ ନକ୍ଷତ୍ର ମଣ୍ଡଳୀକୁ ଦେଖାଇ ଦେଉଦେଉ 'ଆକାଶଗଙ୍ଗା' ଛାୟାପଥର ବିସ୍ତୃତିକୁ ଉଭୟ କଳନା କରୁଥିଲେ । ମଝିରେ ମଝିରେ ମରୁ ପ୍ରାନ୍ତରରେ ରହିଛି କେତୋଟି କଣ୍ଟକିତ ବୁଦାଳିଆ ଉଦ୍ଭିଦ । ହଠାତ୍ ରୋଜାଲିନା ଚିତ୍କାର କରିଉଠିଲେ । ଘଟଣା ଜାଣିବାକୁ ମୁହଁ ବୁଲାଇଲେ ଡେଭିଡ୍ । ସେମାନଙ୍କ ନିକଟରେ କିଛି ଦୂରରେ ଠିଆହୋଇଥିଲା ଗୋଟିଏ ଛୋଟ ଜୀବ । ଆକୃତି ଶିଆଳପରି । ରୋଜାଲିନା ଫିଙ୍ଗି ଦେଇଥିବା ପାଉଁରୁଟିକୁ ଉଦରସ୍ଥ କରିବାରେ ମଗ୍ନ ରହିଥିଲା । ବୃହତ ମରୁଭୂମିରେ ଏ ପ୍ରକାରର ଛୋଟ ଛୋଟ ଶିଆଳ, ମୂଷା, ସାପ ଇତ୍ୟାଦି କାଁ ଭାଁ ଦେଖାଦିଅନ୍ତି । ମାତ୍ର ଉପକୂଳ ନିକଟ ହୋଇଥିବାରୁ ଓ ନିକଟରେ ସହର ତଥା ଜନବସତି ରହିଥିବାରୁ ଏହି ଜୀବଟି ବୋଧହୁଏ ଆଖପାଖ କେଉଁ ବୁଦାରେ ରହିଥିଲା । ପବନରେ ଖାଦ୍ୟର ଆଘ୍ରାଣପାଇ ଛୁଟିଆସିଛି ଏଠାକୁ । ବ୍ୟସ୍ତହେବାର କିଛି ନାହିଁ ରୋଜି । ଏହି ପ୍ରାଣୀଟି ହିଂସ୍ର ନୁହେଁ,

ସେ ତା'ର କାମସାରି ଚାଲିଯିବ । ପରେ ପରେ ହୁଏତ ଆଉ କେତେକ ଜୀବ ତାକୁ ଅନୁସରଣକରି ଆସିପାରନ୍ତି । ତେଣୁ ଫେରିବା ହିଁ ଶ୍ରେୟସ୍କର । ଉଠି ପଡିଲେ ଡେଭିଡ୍ ଓ ରୋଜି । ଗବେଷଣା କେନ୍ଦ୍ରର ଘଣ୍ଟାରେ ଆଠଟା ବାଜିବାର ସୂଚନା ମିଳିଲାଣି । ସେମାନଙ୍କୁ ବାଲୁକା ପଥରେ ଏକ କିଲୋମିଟର ଯାଏଁ ଚାଲିବାକୁ ହେବ । ଏହି ଶାନ୍ତ ପ୍ରାକୃତିକ ପରିବେଶକୁ ଛାଡ଼ି ଏତେ ଶୀଘ୍ର ପ୍ରସ୍ଥାନ କରିବାକୁ ଇଚ୍ଛା ନଥିଲେ ମଧ୍ୟ ବାଧହୋଇ ଉଠିଲେ ଡେଭିଡ୍ ରୋଜିଙ୍କର ଅନୁରୋଧରେ ।



# କିଙ୍ଗଷ୍ଟୋନ ମାନମନ୍ଦିର

ଆଫ୍ରିକାର ସେନିଗଲରେ ନିର୍ମିତ କିଙ୍ଗଷ୍ଟୋନ୍ ମାନମନ୍ଦିର ପୃଥିବୀର ବୃହତ୍ତମ ତଥା ବୈଜ୍ଞାନିକ ଜ୍ଞାନ କୌଶଳ ସମ୍ପନ୍ନ ମାନମନ୍ଦିର ମଧ୍ୟରୁ ଅନ୍ୟତମ । ଏଠାରେ ସ୍ଥାପିତ ହୋଇଥିବା ବୃହତ ଆଣ୍ଟିନାକୁ ଦେଖି ମାନବ ହତବାକ୍ ହୋଇଯାଏ । ବିରାଟକାୟ ଗୋଲାକାର ଘୂର୍ଣ୍ଣନଶୀଳ ଏହି ଆଣ୍ଟିନାର ଅଗ୍ରଭାଗରେ ରହିଛି ଏକ ତଥ୍ୟ ଗ୍ରହଣକାରୀ ରିସିଭର । ବିଶ୍ୱ ବ୍ରହ୍ମାଣ୍ଡରେ ରହିଛନ୍ତି କୋଟିକୋଟି ଛାୟାପଥ । ଆମରି ପୃଥିବୀ ତଥା ସୌରଜଗତ ଏବଂ ସୂର୍ଯ୍ୟ ରହିଥିବା ଛାୟାପଥର ନାମ ହେଉଛି 'ଆକାଶଗଙ୍ଗା' । ଆକାଶଗଙ୍ଗା ଛାୟାପଥପରି ଏକ କୋଟିରୁ ଅଧିକ ଛାୟାପଥ ବିଶ୍ୱବ୍ରହ୍ମାଣ୍ଡରେ ରହିଛନ୍ତି । ପୁଣି ଆକାଶଗଙ୍ଗାରେ ସୂର୍ଯ୍ୟଠାରୁ ବଡ ଓ ସାନ ଶହଶହ କୋଟି ନକ୍ଷତ୍ର, ଗ୍ରହ-ଉପଗ୍ରହମାନ ରହିଛନ୍ତି । ତେଣୁ ଏତେବଡ ବିଶ୍ୱବ୍ରହ୍ମାଣ୍ଡର ତଥ୍ୟ ସଂଗ୍ରହ କିପରି ଦୁରୁହ ବ୍ୟାପାର ତାହା କଳ୍ପନା କରାଯାଇପାରୁ ନାହିଁ । ଆକାଶଗଙ୍ଗା ଛାୟାପଥ ପ୍ରାଏ ତିରିଶ ଲକ୍ଷ ଆଲୋକବର୍ଷ ଅଞ୍ଚଳରେ ମାଡି ରହିଛି ଓ ସୂର୍ଯ୍ୟ ଏହାର କେନ୍ଦ୍ରଠାରୁ କୋଡିଏ ଲକ୍ଷ ଆଲୋକବର୍ଷ ଦୂରରେ ରହିଛି (ଆଲୋକର ଏକ ସେକେଣ୍ଡକୁ ଗତି ତିନିଲକ୍ଷ କିଲୋମିଟର ହେଲେ ଏହା ଘଣ୍ଟାକରେ, ଦିନକରେ ଓ ବର୍ଷକରେ ଯେତେବାଟ ଗତିକରିଯିବ ତାହା ହିଁ ଏକ ଆଲୋକ ବର୍ଷ) । ତେଣୁ ଏହିଭଳି ଅସୀମ ବିଶ୍ୱବ୍ରହ୍ମାଣ୍ଡରୁ ଅନ୍ୟ ନକ୍ଷତ୍ର ଗ୍ରହ ବିଷୟରେ ତଥ୍ୟ ସଂଗ୍ରହ କରିବା ସହ ଅନ୍ୟ ଗ୍ରହ ଓ ନକ୍ଷତ୍ରମାନଙ୍କର କାର୍ଯ୍ୟକଳାପଗୁଡ଼ିକୁ ଲକ୍ଷ୍ୟକରିବା ସାଧାରଣ ଦୂରବୀକ୍ଷଣ ଯନ୍ତ୍ର ଦ୍ୱାରା ସମ୍ଭବପର ନୁହେଁ । ପୁଣି ମହାକାଶଆଡୁ ପୃଥିବୀପ୍ରତି ସବୁବେଳେ ବିପଦ ରହିଛି । ଧୂମକେତୁ ଓ ଗ୍ରହାଣୁପୁଞ୍ଜର ଗତିବିଧି ସବୁବେଳେ ଆମପ୍ରତି ବିପଦ ସୃଷ୍ଟି କରିଆସିଛି । ତେଣୁ ଏ ସବୁ ବିଷୟରେ ତଥ୍ୟ ସଂଗ୍ରହ କରିବାକୁ ସେନିଗଲଠାରେ ଏହି ବୃହତ ବେତାର ଟେଲିସ୍କୋପ୍ ବା ଦୂରବୀକ୍ଷଣ ଯନ୍ତ୍ର ସ୍ଥାପନ କରାଯାଇଛି ।

ସାଧାରଣତଃ ଆମଠାରୁ କୋଟିକୋଟି ମାଇଲ ଦୂରରେ ରହିଥିବା ଗ୍ରହ ନକ୍ଷତ୍ର ମଣ୍ଡଳୀରୁ ଯେଉଁସବୁ ବେତାର ତରଙ୍ଗ ବା ଆଲୋକ ପୃଥିବୀ ପୃଷ୍ଠକୁ ଆସିଥାଏ

ତାହା ଅତ୍ୟନ୍ତ ଦୁର୍ବଳ । ଅତ୍ୟନ୍ତ ବୃହତ ଆଣ୍ଟିନାଗୁଡ଼ିକ ଏହି ଦୁର୍ବଳ ତରଙ୍ଗକୁ ଧରି ସଂଗ୍ରହକରେ ଓ ଏକ ଦର୍ପଣପରି ଏହାକୁ ଶକ୍ତିଶାଳୀ ଦୂରବୀକ୍ଷଣ ଯନ୍ତ୍ରକୁ ପ୍ରେରଣ କରିଥାଏ । ଏହି ଆଲୋକ ତରଙ୍ଗ ଦୂରବୀକ୍ଷଣ ଯନ୍ତ୍ରକୁ ଯିବାଦ୍ୱାରା ଆମେ ବେତାର ତରଙ୍ଗକୁ ଦେଖିପାରୁ ନ ଥିବାବେଳେ ଯେଉଁ ବସ୍ତୁ ଏ ପ୍ରକାର ବେତାର ତରଙ୍ଗକୁ ପ୍ରେରଣ କରୁଥାଏ ତାହାର ଏକ ପ୍ରତିରୂପ ଇଲେକ୍‌ଟ୍ରୋନିକ୍ସ ପଦ୍ଧତିରେ ସୃଷ୍ଟି କରାଯାଇପାରେ । ଆଣ୍ଟିନାର ଆକାର ଓ ଗଠନ ପ୍ରଣାଳୀ ଦ୍ୱାରା ଏହା କେତେ ଦୁର୍ବଳ ଓ ଦୂରବର୍ତ୍ତୀ ବେତାର ତରଙ୍ଗକୁ ଗ୍ରହଣ କରିପାରିବ ତାହା ନିର୍ଭର କରିଥାଏ । ତେଣୁ କିଙ୍ଗଷ୍ଟୋନ ମାନମନ୍ଦିରରେ ନିର୍ମିତ ଆଣ୍ଟିନା ଅତ୍ୟନ୍ତ ଶକ୍ତିଶାଳୀ ଓ ଘୂର୍ଣ୍ଣୟଶକ୍ତି ସମ୍ପନ୍ନ । ମହାକାଶରେ ଯେକୌଣସି ଅଞ୍ଚଳର ଗ୍ରହ ନକ୍ଷତ୍ରକୁ ଦେଖିବାକୁ ଇଚ୍ଛାକଲେ ବୈଜ୍ଞାନିକମାନେ ଏହାକୁ ଇଚ୍ଛା ଅନୁସାରେ ଘୁରାଇ ପାରନ୍ତି । ଆକାଶ ଗଙ୍ଗାର ନିକଟବର୍ତ୍ତୀ ଛାୟାପଥ 'ଆଣ୍ଡ୍ରୋମେଡା' ଓ ଅନ୍ୟ ଛାୟାପଥ ତଥା ନକ୍ଷତ୍ରଙ୍କ ବିଷୟରେ ତଥ୍ୟ ସଂଗ୍ରହ ଏହାଦ୍ୱାରା ସମ୍ଭବ ହୋଇପାରୁଛି ।





୧୯୩୧ ମସିହାର କଥା । ଆମେରିକାର ବେତାର ଇଞ୍ଜିନିୟର କାର୍ଲ ଜନସ୍କି ପ୍ରଥମଥର ପାଇଁ ଘୋଷଣାକଲେ ଯେ, ସେ ବିଶ୍ୱ ବାହାରୁ ଦୂରବର୍ତ୍ତୀ ନକ୍ଷତ୍ର, ଛାୟାପଥ ଓ ନୈସର୍ଗିକ ଅଞ୍ଚଳରୁ କ୍ରମାଗତଭାବେ ପୃଥିବୀକୁ ଆସୁଥିବା ଅନେକ କ୍ଷୀଣ ବେତାର ତରଙ୍ଗକୁ ବାରିପାରିଛନ୍ତି । ଦ୍ୱିତୀୟ ବିଶ୍ୱଯୁଦ୍ଧପରେ ଏହି ବାହ୍ୟ ତରଙ୍ଗ ବିଷୟରେ ଗବେଷଣା ଆରମ୍ଭ କରାଗଲା । ବିଶ୍ୱର ଅନେକ ବେତାର ଜ୍ୟୋର୍ତିବିଜ୍ଞାନୀ ମତଦେଲେ ଯେ, ପୃଥିବୀର ଆୟୋନସ୍ଫିୟର ବିଦ୍ୟୁତ୍ ଦ୍ୱାରା ପ୍ରବାହିତ ବାୟୁମଣ୍ଡଳ ହୋଇଥିବାରୁ ବାହାରୁ ଆସୁଥିବା ଅନେକ କ୍ଷୀଣ ବେତାର ତରଙ୍ଗ ଏହି ଅଞ୍ଚଳ ଭେଦକରି ପୃଥିବୀ ପୃଷ୍ଠକୁ ଆସିପାରୁ ନାହିଁ । ଏହା ବ୍ୟତିତ ପୃଥିବୀପୃଷ୍ଠ ଉପରେ ରହିଥିବା ଅନ୍ୟ ବାୟୁସ୍ତର ତଥା ବିଭିନ୍ନ ଶବ୍ଦ ଏଥିରେ ବ୍ୟାଘାତ ସୃଷ୍ଟିକରିବାର ସମ୍ଭାବନା ରହିଛି । ଏହାପରେ ବୃହତ ଦୂରବୀକ୍ଷଣ ଯନ୍ତ୍ରଦ୍ୱାରା ଓ ବଡବଡ ଆଣ୍ଟିନା ଗ୍ରହଣକାରୀ କେନ୍ଦ୍ରଦ୍ୱାରା ଏହି

ତଥ୍ୟ ସଂଗ୍ରହ କରାଯିବାର ଯୋଜନା କରାଗଲା । ସେନିଗାଲ୍‌ଠାରେ ଆମେରିକା ଦ୍ୱାରା ପ୍ରତିଷ୍ଠିତ ଏହି ବୃହତ ଦୂରବୀକ୍ଷଣ ଯନ୍ତ୍ରରେ ତିରିଶଟି ଡିସ୍ ଆଣ୍ଟିନା ସଂଯୁକ୍ତ । ଏଥି ମଧ୍ୟରୁ ପ୍ରତ୍ୟେକଟି ଆଣ୍ଟିନା ୪୫ ମିଟର ବ୍ୟାସଯୁକ୍ତ । ଇଂରାଜୀ ଅକ୍ଷର (Y)ପରି ହୋଇଥିବା ଏହି ବୃହତ୍ତ ଆଣ୍ଟିନାର ପ୍ରତ୍ୟେକ ବାହୁର ଲମ୍ବ ପ୍ରାଏ ଚଉଦ କିଲୋମିଟର । ଆକାଶର ତିରିଶ କିଲୋମିଟର ଅଞ୍ଚଳକୁ ବ୍ୟାପି ରହିଥିବା ଏହି ବୃହତ ଯାନ୍ତ୍ରିକ ପିଣ୍ଡ ମହାକାଶରୁ ପୃଥିବୀକୁ ଆସୁଥିବା ଯେକୌଣସି ଦୁର୍ବଳ ବେତାର ତରଙ୍ଗକୁ ଧରିପାରିବାରେ ସକ୍ଷମ । ସୂର୍ଯ୍ୟ, ଶନି, ବୃହସ୍ପତି ଗ୍ରହରୁ ଆସୁଥିବା ବେତାର ତରଙ୍ଗକୁ ପରୀକ୍ଷା କରିବା ସହ ଅନ୍ୟାନ୍ୟ ଦୂରଦୂରାନ୍ତର ନକ୍ଷତ୍ର ଓ ଗ୍ରହ ମଣ୍ଡଳୀରୁ ଆସୁଥିବା ବାର୍ତ୍ତାକୁ ଗ୍ରହଣକରି ଏହାକୁ ବିଶ୍ଳେଷଣକରିବା ହେଉଛି କିଙ୍ଗଷ୍ଟୋନ ମାନମନ୍ଦିରର ମୁଖ୍ୟ କାର୍ଯ୍ୟ ।

ପୃଥିବୀ ବାହାରେ ଜୀବନର ସତ୍ତା ଖୋଜିବା କାର୍ଯ୍ୟ ମଧ୍ୟ ଏହି ମାନମନ୍ଦିର ଉପରେ ନ୍ୟସ୍ତ କରାଯାଇଛି । ହୁଏତ ଆମଠାରୁ କୋଟିକୋଟି ଆଲୋକବର୍ଷ ଦୂରରେ ପୃଥିବୀପରି ଏକ ସଭ୍ୟ, ଶିକ୍ଷିତ ସମାଜ ରହିଥିବ ଓ ସେମାନେ ଆମଭଳି ଏକ ସୁଜଳା ସୁଫଳା କୋଳାହଳମୟ ଗ୍ରହରେ ବାସ କରୁଥିବେ - ଏହା ଜାଣିବାପରେ ଆମେସବୁ କେତେ ଆନନ୍ଦିତ ନ ହେବା ସତେ ? ଏହି କେନ୍ଦ୍ରର ମୁଖ୍ୟ ବୈଜ୍ଞାନିକ ହେଉଛନ୍ତି ପ୍ରଫେସର ଡେଭିଡ୍ ଓ ରୋଜାଲିନା । ତାଙ୍କସହ ଅନେକ ସହକାରୀ ବିଶେଷଜ୍ଞ ଓ ଗବେଷକ ଏଠାରେ କାର୍ଯ୍ୟକରନ୍ତି । ସୁଦୂର ଆମେରିକାର ଟେକ୍ସାସ ପ୍ରଦେଶରେ ଜନ୍ମିତ ଡେଭିଡ୍ ହିଁ ମହାକାଶ ବିଜ୍ଞାନ କ୍ଷେତ୍ରରେ ଜଣେ ବରିଷ୍ଠ ବୈଜ୍ଞାନିକ । ସାରା ଜୀବନ ସେ ମହାକାଶ ଗବେଷଣାକରି ଅନେକ ନୂତନ ତଥ୍ୟ ଆବିଷ୍କାର କରିବାସହ ଅନେକ ସମ୍ମାନର ଅଧିକାରୀ ହୋଇଛନ୍ତି । ତାଙ୍କର ଅନ୍ତିମ ଇଚ୍ଛା ସେ ପୃଥିବୀ ବାହାରେ ଜୀବନର ସୂରାକ ରହିଥିବା ଏକ ଗ୍ରହ ବିଷୟରେ ପୃଥିବୀବାସୀଙ୍କ ଆଗରେ ତଥ୍ୟ ଉପସ୍ଥାପିତ କରିବେ । ଅନେକ ଥର ପତ୍ନୀ ତଥା ସହକାରୀ ରୋଜିଙ୍କୁ ମନର କଥା ସେ କହିସାରିଲେଣି । ପୃଥିବୀ ବାହାରୁ ଆସୁଥିବା ସମସ୍ତ କ୍ଷୀଣ ବେତାର ତରଙ୍ଗକୁ ତନ୍ନ ତନ୍ନ କରି ପରୀକ୍ଷା କରିସାରିଲେଣି । ପୃଥିବୀରୁ ମଧ୍ୟ ଅନେକ ବେତାର ବାର୍ତ୍ତା ପଠେଇ ସାରିଲେଣି ମାତ୍ର ଆଜିଯାଏ ଏ କ୍ଷେତ୍ରରେ ସଫଳତା ତାଙ୍କୁ ମିଳିନାହିଁ । ଅସୀମ ବିଶ୍ୱବ୍ରହ୍ମାଣ୍ଡରେ ଯେଉଁଠି ଦୂରତା ମାପିବାକୁ ଆଲୋକକୁ ବ୍ୟବହାର କରାଯାଏ ସେଠାରେ ଜୀବନର ସତ୍ତା ଖୋଜିପାଇବା କ'ଣ

ସହଜ କଥା । ତଥାପି ବୈଜ୍ଞାନିକ ଜୀବନରେ ହତାଶା ନାହିଁ ସେ ସର୍ବଦା ଆଶବାଦୀ ଓ ସଫଳକାମୀ । ଏହା ଯଦି ସତ୍ୟ ତେବେ ଡେଭିଡ୍‌ଙ୍କ ଜୀବନରେ କ'ଣ ସଫଳତା ଆସବ ନାହିଁ ! ଅଲୌକିକ ନୂତନ ତଥ୍ୟ ସେ କ'ଣ ବିଶ୍ୱବାସୀଙ୍କ ଆଗରେ ଉପସ୍ଥାପିତ କରିପାରିବେ ନାହିଁ, ହଁ ତାଙ୍କର ସ୍ୱପ୍ନ ନିଶ୍ଚୟ ସଫଳହେବ, ଆଶ୍ୱାସନା ଦେଇ ଡେଭିଡ୍‌ଙ୍କୁ ସ୍ୱାନ୍ତନା ଦେଉଥିଲେ ପତ୍ନୀ ରୋଜି । ରାତ୍ରି ଯେ ଗୋଟାଏ ବାଜିଲାଣି । ଏଯାଏ ଆଖିପତା ପଡୁନାହିଁ । ବୈଜ୍ଞାନିକର ଆଖିରେ ପୁଣି ନିଦ କଣ, ତା'ର ବିଶ୍ରାମ କାହିଁ ? ତଥାପି ଚିନ୍ତାଗ୍ରସ୍ତ ରାଜ୍ୟରୁ ଫେରିଆସି ଆଖିପତା ବୁଜିଲେ ଡେଭିଡ୍ । ବଡିଭୋରୁ ତାଙ୍କୁ ଗବେଷଣା କେନ୍ଦ୍ରକୁ ଏକ ସ୍ୱତନ୍ତ୍ର ଗବେଷଣା ପାଇଁ ଯିବାକୁ ହେବ ।



# ମହାକାଶରେ ଭାସମାନ ପର୍ବତ

ପ୍ରାତଃ ସୂର୍ଯ୍ୟର କଅଁଳିଆ ରଶ୍ମୀ ସ୍ୱଚ୍ଛ ବାତାୟନ ବାଟଦେଇ ଆସି ପଡୁଥିଲା ଡେଭିଡ୍‌ଙ୍କ ଶୟନ କକ୍ଷରେ । ଭୀମ ଆଟ୍‌ଲାଣ୍ଟିକ ମହାସାଗରର ଅମାପ ଜଳରାଶୀ ଛାଡ଼ି କ୍ରମେ ଆକାଶଗାମୀ ହେଉଥିଲେ ରକ୍ତିମ ଆଭାଯୁକ୍ତ ସୂର୍ଯ୍ୟ । ଗବେଷଣାଗାରର ସମୟସୂଚକ ଯନ୍ତ୍ର ଚିତ୍କାରକରି ଜଣାଇଦେଲା ୬ଟା ବାଜିଲାଣି ବୋଲି । ଶଯ୍ୟାଛାଡ଼ିଲେ ଡେଭିଡ୍ । ପ୍ରାତଃ କାର୍ଯ୍ୟ ସମାପନକରି ସାରିଲେଣି ସେତେବେଳକୁ ରୋଜାଲିନା । ଉଭୟେ କିଛି ସମୟ ଭିତରେ ପ୍ରସ୍ତୁତହୋଇ ଆଗଭେଲେ ଗବେଷଣାଗାର ଆଡେ । ତାଙ୍କପାଇଁ ଗବେଷଣାଗାରରେ କାର୍ଯ୍ୟକରିବାର କୌଣସି ନିର୍ଦ୍ଦିଷ୍ଟ ସମୟ ନାହିଁ । ଅନେକଦିନ ସେହିଠାରେ ହିଁ ରହିଯିବାକୁ ହୋଇଛି ଉଭୟଙ୍କୁ । ଖାଇବା ଭୁଲିଯାଇଛନ୍ତି ଅନେକଥର ସେମାନେ ଗବେଷଣାଭିତରେ ମଜ୍ଜିରହି । ଗବେଷଣାଗାରର ସ୍ୱୟଂଚଳିତ ଦ୍ୱାର ଡେଭିଡ୍ ଓ ରୋଜାଲିନା ପହଞ୍ଚିବା ମାତ୍ରେ ଆପେ ଆପେ ଖୋଲିଯାଇ ସେମାନଙ୍କୁ ସତେ ଯେପରି ସ୍ୱାଗତ୍ କରୁଥିଲା । ପ୍ରଶସ୍ତ ଶୀତତାପ ନିୟନ୍ତ୍ରିତ ଗବେଷଣା କୋଠରୀ, । ଆଗରେ ଅନେକ ଗୋଲାକାର ନଳୀ । ଦୂରବୀକ୍ଷଣ ଯନ୍ତ୍ରସହ ସଂଯୁକ୍ତ ହୋଇରହିଛି । ଏହାରି ମାଧମରେ ସେମାନେ ଦେଖିବେ ବିଶ୍ୱବ୍ରହ୍ମାଣ୍ଡରେ ଆମଠାରୁ କୋଟିକୋଟି ଆଲୋକ ବର୍ଷ ଦୂରରେ ଥିବା ଗ୍ରହ ନକ୍ଷତ୍ରଙ୍କୁ ଆଉ ସଂଗ୍ରହ କରିବେ ସେମାନଙ୍କ ବିଷୟରେ ଅନେକ ଅଜଣା ତଥ୍ୟ । ମଙ୍ଗଳ ଓ ବୃହସ୍ପତି ଗ୍ରହ ମଧ୍ୟବର୍ତ୍ତୀ ଅଞ୍ଚଳରେ ରହିଥିବା ଗ୍ରହାଣୁ ମଣ୍ଡଳଆଡେ ଦୂରବୀକ୍ଷଣ ଯନ୍ତ୍ରର ଦିଗ ସ୍ଥିରକରିବାକୁ ନିର୍ଦ୍ଦେଶ ଦେଲେ ଡେଭିଡ୍ ଜଣେ ସହକାରୀଙ୍କୁ । ଗତଦିନର ଗବେଷଣା ନଥିପତ୍ର ଦେଖିବାରେ ସେ ବ୍ୟସ୍ତ ରହିଥିଲେ । ପ୍ରତ୍ୟେକଦିନ ସଂଗ୍ରହ କରାଯାଉଥିବା ଓ ପୃଥିବୀରେ ଆସି ପହଞ୍ଚୁଥିବା ବେତାର ତରଙ୍ଗର କମ୍ପ୍ୟୁଟର ଦ୍ୱାରା ବିଶ୍ଳେଷିତ ତଥ୍ୟରାଜି ତାଙ୍କ ଆଗରେ ରଖାଯାଇଥିଲା । ତନ୍ନ ତନ୍ନକରି ସେ ସେଗୁଡ଼ିକୁ ପରୀକ୍ଷାକରି ଚାଲିଥିଲେ' ହୁଏତ ଏହି ତଥ୍ୟରୁ କିଛି ନୂତନତ୍ୱ ଜଣାପଡିବ, ବିଶ୍ୱବ୍ରହ୍ମାଣ୍ଡ ବିସ୍ମୟରୁ କିଛି ଉଦ୍ଭାସିତ ହେବ ଏହି ଆଶାନେଇ । ହଠାତ୍ ସେ ଅଟକିଗଲେ । ଏ କ'ଣ ? ଓର୍ଟ ମେଘମାଳା ନିକଟରେ ସୁପ୍ତ ଅବସ୍ଥାରେ ଥିବା କେତେକ ଧୂମକେତୁଙ୍କ

ଗତିବିଧିରେ ପରିବର୍ତ୍ତନର ସୂଚନା... ସେହି କାଗଜଖଣ୍ଡ ଗୁଡ଼ିକ ସେ ପରୀକ୍ଷାପାଇଁ ଅଲଗାକରୁଥିଲେ । ଗତକାଲି ଏହି ତଥ୍ୟ ମହାକାଶ ସର୍ବେକ୍ଷଣବେଳେ ଜଣାପଡିଛି । 'ଆକାଶଗଙ୍ଗା' ଛାୟାପଥରେ 'ଓର୍ଟ' ମେଘମାଳର ଅବସ୍ଥିତି ପୃଥିବୀ ଓ ସୌରମଣ୍ଡଳଠାରୁ ଲକ୍ଷଲକ୍ଷ ଆଲୋକବର୍ଷ ଦୂରରେ । ମାତ୍ର ଏ କ'ଣ ? ତାଙ୍କ ସହକାରୀ ହଠାତ୍ ଚିତ୍କାର କରିଉଠିଲେ ସାର ! ଚଞ୍ଚଳ ଆସନ୍ତୁ ଏକ ବିପଦର ସମ୍ଭାବନା ବୋଧହୁଏ । ତାଙ୍କର ସହକାରୀଙ୍କୁ ସେ ଦୂରବୀକ୍ଷଣ ଯନ୍ତ୍ରର ଲକ୍ଷ ଗ୍ରହାଣୁମଣ୍ଡଳ ଆଡେ ବୁଲାଇ ରଖିବାକୁ ନିର୍ଦ୍ଦେଶ ଦେଇଥିଲେ । ଏହି ଗ୍ରହାଣୁମଣ୍ଡଳ ବିଷୟରେ ଆଜି ସେ ଗବେଷଣା କରୁଥିଲେ । ତାଙ୍କର ସହକାରୀ ମଧ୍ୟ ଜଣେ ବରିଷ୍ଠ ଜ୍ୟୋତିର୍ବିଜ୍ଞାନୀ ଡକ୍ଟର ଆଲବର୍ଟ । ସେ ଚିତ୍କାରକରିବା କୌଣସି ସାଧାରଣ ଘଟଣା ନୁହେଁ । ନିଶ୍ଚିତଭାବେ କିଛି ଅଘଟଣର ସୂଚନା । ଡେଭିଡ୍ ତତ୍‌କ୍ଷଣାତ ଉଠିଗଲେ ଦୂରବୀକ୍ଷଣ ଯନ୍ତ୍ର ନିକଟକୁ । ଦୂରବୀକ୍ଷଣର ଗୋଲାକାର ମଣ୍ଡଳୀରେ ନିଜର ଚକ୍ଷୁ ଲଗାଇବା ମାତ୍ରେ ସେ ମଧ୍ୟ ଚମକି ଉଠିଲେ, ଏ କ'ଣ ? ଏକ ବୃହତ ଗ୍ରହାଣୁପିଣ୍ଡ । ସେ ଆଜିଯାଏ



(ଗ୍ରହାଣୁମଣ୍ଡଳ ଓ ବୃହଦ୍ ଗ୍ରହାଣୁ)

ଏତେବଡ ଗ୍ରହାଣୁଖଣ୍ଡ ବୋଧହୁଏ ଦେଖି ନଥିଲେ । ମଙ୍ଗଳ ଓ ବୃହସ୍ପତି ଗ୍ରହର ମଧ୍ୟବର୍ତ୍ତୀ ଅଞ୍ଚଳର ଗ୍ରହାଣୁମଣ୍ଡଳରେ ଭାସମାନ ଏହି ବୃହତ ଗ୍ରହାଣୁ ଏକ ପର୍ବତ ଆକାରପରି ଜଣାପଡୁଥିଲା ଏବଂ ଏହା ଏହି ମଣ୍ଡଳର ବାହ୍ୟସ୍ତରରେ ଗତି କରୁଥିବାପରି ଜଣାପଡୁଥିଲା । ଯଦି ଏହାର ଗତିପଥ ପୃଥିବୀଆଡ଼େ ଆସେ ତେବେ ତ ପୃଥିବୀ ପାଇଁ ଘୋର ବିପଦର ସମ୍ଭାବନା । ଡେଭିଡ୍ ନିର୍ଦ୍ଦେଶଦେଲେ କେନ୍ଦ୍ରରୁ ଜରୁରୀକାଳିନ ଘଣ୍ଟିକୁ ତୁରନ୍ତ ବଜାଯାଉ । ଯାହା କରିବାକୁ ହେବ ତତ୍‌କ୍ଷଣାତ ଠିକ୍ କରିବାକୁ ହେବ । କେନ୍ଦ୍ରର ସମସ୍ତ ବରିଷ୍ଠ ବୈଜ୍ଞାନିକମାନଙ୍କୁ ଏକ ମିନିଟ ଭିତରେ ଏକାଠିହେବାକୁ ନିର୍ଦ୍ଦେଶ ଦେଲେ ଡେଭିଡ୍ । ବିପଦ ଘଣ୍ଟି ଚିତ୍କାର କରିଉଠିଲା ତତ୍‌କ୍ଷଣାତ୍ । ଯେପରି କୌଣସି ବିପଦ ନ ଦେଖାଦେଲେ ଏହି ଘଣ୍ଟି ସାଧାରଣତଃ ବଜାଯାଏ ନାହିଁ । ଗବେଷଣା କେନ୍ଦ୍ରରେ ହଇଚଇ ସୃଷ୍ଟି ହୋଇଗଲା । ଅନେକଙ୍କ ପାଟିରୁ ବାହାରି ଆସୁଥିବା ଅଧାକଥା ମଧ୍ୟ ଅଟକିଗଲା । ସମେସ୍ତ ଯେ ଯେଉଁ କାର୍ଯ୍ୟ କରୁଥିଲେ, ଯେପରି ଅବସ୍ଥାରେ ଥିଲେ ସବୁଛାଡ଼ି ଆଗଇଲେ ଗବେଷଣା କେନ୍ଦ୍ରର ସମ୍ମିଳନୀ କକ୍ଷଆଡେ । ସବୁଆଡେ ତତ୍ପରତା, ଯେପରି କିଛି ଗୋଟାଏ ଚରମ ବିପତ୍ତିର ସମ୍ମୁଖୀନ ହେବାକୁ ହେବ ସମସ୍ତଙ୍କୁ ।



ଗବେଷଣାଗାରର ବୃହତ ସମ୍ମିଳନୀ କକ୍ଷ । ସଂପୂର୍ଣ୍ଣ ଶୀତତାପ ନିୟନ୍ତ୍ରିତ ଏହି ବୃହତ୍ତ କୋଠରୀ ତଳେ ଝୁଲସୁଛି ମୋଟା ନାଲି ରଙ୍ଗର ପଶମ ଗାଲିଚା । ଧାଡ଼ିଧାଡ଼ି

ଚୌକି ଓ ମାଇକ୍ରୋଫୋନର ସୁସଜ୍ଜିତ ଏହି ସମ୍ମିଳନୀ କକ୍ଷ, ଗମ୍ଭୀରତାର ପ୍ରଥମ ନିଦର୍ଶନ ପ୍ରମାଣିତ କରୁଛି । କେତେବେଳୁ ଡେଭିଡ୍ ଓ ରୋଜାଲିନା ପହଁଞ୍ଚିଲେଣି ସେଠାରେ । ଅନ୍ୟମାନଙ୍କୁ କେବଳ ଅପେକ୍ଷା । ଡେଭିଡ୍‌ଙ୍କ ସହକାରୀ ଦୂରବୀକ୍ଷଣ ଯନ୍ତ୍ରରେ ଦେଖିଥିବା ଗ୍ରହାଣୁ ପୁଞ୍ଜର ଫଟୋଗ୍ରାଫ ଗ୍ରହଣକରି ନେଇସାରିଲେଣି । ଏହା ସଙ୍ଗେ ସଙ୍ଗେ ପ୍ରଦର୍ଶିତହେବ ସମ୍ମିଳନୀ କକ୍ଷର ବୈଜ୍ଞାନିକମାନଙ୍କ ଆଗରେ ମାତ୍ର କେତେ ସେକେଣ୍ଡ ଭିତରେ । ସମସ୍ତେ ପ୍ରାୟ ପହଞ୍ଚି ଗଲେଣି । ଡେଭିଡ୍ ଆରମ୍ଭକଲେ, ଆଜି ଆମ ସମସ୍ତଙ୍କ ନିକଟରେ ଏକ ବୃହତ୍ତର ସମସ୍ୟା ଉପସ୍ଥିତ । ସେ ଭିଡ଼ିଓ ଟେପକୁ ସଞ୍ଚାଳନ କରିବାକୁ ସହକାରୀ ଆଲବର୍ଟଙ୍କୁ ନିର୍ଦ୍ଦେଶ ଦେଲେ । ସମ୍ମିଳନୀ କକ୍ଷର ବୃହତ ପରଦା ଉପରେ ଭାସିଉଠିଲା ଏକ ଚମକପ୍ରଦ ଚିତ୍ର । ଏକ କଳା ରଙ୍ଗର ମହାକାଶପିଣ୍ଡ, ବୃହତ ଏହାର ଆକାର, ସତେ ଯେପରି ଏକ ଛୋଟ ପାହାଡ କ୍ଷୀପ୍ର ଗତିରେ ମହାକାଶରେ ଏହା ଗ୍ରହାଣୁ ମଣ୍ଡଳ ନିକଟରେ ଘୂର୍ଣ୍ଣୟମାନ ହେଉଛି । ଗ୍ରହାଣୁ ମଣ୍ଡଳର ଗୋଲାକାର ପଥ ତ୍ୟାଗକରିବା ଅବସ୍ଥାରେ ଏକପ୍ରକାର ପହଞ୍ଚିସାରିଥିଲା ଏହି ମହାକାଶପିଣ୍ଡ । ବୋଧହୁଏ କେତେଘଣ୍ଟାପରେ ଏହି ପିଣ୍ଡ ଗ୍ରହାଣୁ ମଣ୍ଡଳ ଛାଡ଼ି ଆଗେଇବ ପୃଥିବୀଆଡେ କିମ୍ବା ମହାକାଶର ଅନ୍ୟ ଯେ ଯେକୌଣସି ଅଞ୍ଚଳକୁ । ଅନ୍ୟ ଯେଉଁଆଡେ ଗଲେ କୌଣସି ଅସୁବିଧା ନାହିଁ ମାତ୍ର ଯଦି ଏହି ମହାକାଶ ଦାନବ ପୃଥିବୀ ଆଡେ ମୁହାଁଇଲା ତେବେ କଥା ସରିଲା ! କି ପ୍ରକାର ପ୍ରଳୟକାଣ୍ଡ ଯେ ଏହା ପୃଥିବୀରେ ସୃଷ୍ଟିକରିବ କୁହାଯାଇପାରିବ ନାହିଁ । ଏହି ଗ୍ରହାଣୁର ଅବସ୍ଥିତି ଓ ଗତିପଥ ଦେଖିବାପରେ ସମସ୍ତେ ଆବକ୍ ହୋଇଯାଇଥିଲେ । କେନ୍ଦ୍ରର ସମସ୍ତେ ପ୍ରାୟ ବରିଷ୍ଠ ଜ୍ୟୋତିର୍ବିଜ୍ଞାନୀ । ସେମାନେ ସବୁ ଏ ପ୍ରକାର ମହାଜାଗତିକ ପଦାର୍ଥ ସହ ପରିଚିତ । ପ୍ରତ୍ୟେକ ଦିନ ମହାକାଶ ଗବେଷଣା ସମୟରେ ଏଭଳି ଅନେକ ପ୍ରକାଣ୍ଡ ଗ୍ରହାଣୁ ସହ ଏମାନଙ୍କର ଦୂରବୀକ୍ଷଣ ଯନ୍ତ୍ର ମାଧ୍ୟମରେ ସାକ୍ଷାତ ହୋଇଥାଏ । ମାତ୍ର ଏହି ଗ୍ରହାଣୁ ଯେଉଁପରି ଅବସ୍ଥାରେ ରହିଛି ତାହାହିଁ ସମସ୍ତଙ୍କ ପାଇଁ ଚିନ୍ତାର କାରଣ ହୋଇଥିଲା । କାରଣ ଥରେ ପୃଥିବୀଆଡେ ମୁହାଁଇ ଯଦି ଏହା ଏକ ଜନବସତି ଅଞ୍ଚଳକରେ ଧକ୍କାଦିଏ ତେବେ କେତେ ଯେ ଧନଜୀବନ ନଷ୍ଟ ହେବ ତାର କଳ୍ପନା କରିହେଉ ନାହିଁ । ଡେଭିଡ୍ ନିର୍ଦ୍ଦେଶଦେଲେ ପୂର୍ବେ ପୃଥିବୀକୁ ଆସି ଧନଜୀବନ ହାନି ଘଟାଇଥିବା କେତୋଟି ବୃହତ ଗ୍ରହାଣୁ ସମ୍ପର୍କରେ ସୂଚନା ଉପସ୍ଥାପିତ କରିବାକୁ ଡକ୍ଟର ଆଲବର୍ଟଙ୍କୁ । ଗବେଷଣାକେନ୍ଦ୍ରର ବୃହତ ପରଦା ଉପରେ ସଞ୍ଚାଳିତ ଭିଡ଼ିଓ ଟେପରୁ ଭାସିଆସିଲା ଅନେକ ବିଭୀଷିକାମୟ ଗ୍ରହାଣୁଙ୍କ ଚିତ୍ର ।

ଏହି ବିଷୟରେ କେନ୍ଦ୍ରର ବୈଜ୍ଞାନିକମାନେ ଜାଣିଥିଲେ ମଧ୍ୟ ନିକଟ ଅତୀତର କେତେକ ଘଟଣାବଳୀ ସହ ଗ୍ରହାଣୁର ଯାତ୍ରା ଚିତ୍ର ତଥା ବିଭୀଷିକାମୟ କାର୍ଯ୍ୟକଳାପ ବିଷୟରେ ଆଉଥରେ ସ୍ମୃତିଚାରଣ କରିବା ମୁଖ୍ୟତଃ ଏହି ଭିଡ଼ିଓ ପ୍ରଦର୍ଶନର ଲକ୍ଷ ।



# ଡାଇନୋସରର ମୃତ୍ୟୁଘଣ୍ଟି

୬କୋଟି ୫୦ଲକ୍ଷ ବର୍ଷ ତଳର ପୃଥିବୀ । ଶ୍ୟାମଳ ବୃକ୍ଷଲତାରେ ପୂର୍ଣ୍ଣ ପୃଥିବୀରେ ସୃଷ୍ଟି ହୋଇସାରିଲେଣି ଅନେକ ଛୋଟବଡ଼ ପ୍ରାଣୀ ଆଉ ଉଦ୍‌ଭିଦ । ଶ୍ୟାମଳିମାରେ ଭରପୁର ପୃଥିବୀରେ ରାଜୁତି କରୁଥାଏ ରାକ୍ଷସ ଆକୃତିର ଜୀବ ଡାଇନୋସର । କି ବିରାଟ ତାର ଆକୃତି ! ହାତୀଠାରୁ ୫୦/୬୦ ଗୁଣ ବଡ଼ । ଏକକୋଟି ବର୍ଷ ଯାଏ ଏହି ବୃହତ ପ୍ରାଣୀ ପୃଥିବୀ ପୃଷ୍ଠରେ ଦେଖାଦେଇଥିଲା । ମଣିଷର ସୃଷ୍ଟି ତ ମାତ୍ର ୧୫ଲକ୍ଷ ବର୍ଷ ହେଲା । ସବୁଜ ସୁନ୍ଦର ପୃଥିବୀରେ ଚାଲିଥିଲା ବୈଚିତ୍ର୍ୟମୟ ଲୀଳାଖେଳା, ମାତ୍ର ଠିକ୍ ଏହି ସମୟରେ ଦେଖାଦେଲା ଏକ ବିଭୀଷିକାମୟ ଚିତ୍ର । କି ପ୍ରଚଣ୍ଡ ବିସ୍ଫୋରଣ ଓ ପ୍ରଳୟ । ସାଗର ଗର୍ଭର ଉତ୍ତଳ ଜଳରାଶୀ ଏହି ବିଭିଷୀକାମୟ ବିସ୍ଫୋରଣପରେ କେତେ ହଜାର ଫୁଟ ଉପରକୁ ଉଠିଗଲା ପ୍ରଚଣ୍ଡଭାବେ । ପୃଥିବୀରୁ ଆରମ୍ଭହେଲା ଅଗ୍ନି ଉଦ୍‌ଗିରଣ ଓ ଏହାର ପ୍ରଭାବରେ ଉତ୍ତପ୍ତ ମାଟି, ପଥର, କାଦୁଅ ଓ ବିଷାକ୍ତ ବାଷ୍ପ । ଏକକୋଟି ବର୍ଷ ପୃଥିବୀ ପୃଷ୍ଠରେ ପ୍ରଭାବ ବିସ୍ତାରକରି ରହିଆସିଥିବା ବୃହତ ଜୀବ ଡାଇନୋସର ପ୍ରଭୃତି ମାତ୍ର କେତେ ମିନିଟ ଭିତରେ ସମୂଳେ ବିନାଶପ୍ରାପ୍ତ ହୋଇଗଲେ । କେତେକ ମାଟିତେଳେ ପୋତି ହୋଇପଡିଲେ । ସୁନ୍ଦର ଶ୍ୟାମଳ ପୃଥିବୀ ମାତ୍ର କେତେଘଣ୍ଟା ଭିତରେ ନୀରବ ହୋଇଗଲା, ଏହା ପୃଷ୍ଠରୁ କୋଳାହଳ ଲୋପପାଇଲା, ଡାଇନୋସର





ବଂଶ ଚିରଦିନ ପାଇଁ ଏହା ବକ୍ଷରୁ ବିଦାୟନେଲା । ପୃଥିବୀରେ ଥିବା ୭୫ରୁ ୯୫ଭାଗ ଜୀବଜନ୍ତୁ ଓ ଉଦ୍ଭିଦରାଜି ସେତେବେଳେ ମୃତ୍ୟୁ ମୁଖରେ ପଡିଲେ । ତେବେ ହଠାତ୍ ଏପରି ଘଟିଲା କାହିଁକି ? ବୈଜ୍ଞାନିକମାନେ ଅନେକ କିଲୋମିଟର ଆୟତନର ଏକ ବୃହତ ଗ୍ରହାଣୁ ବା ଧୂମକେତୁ ପ୍ରଚଣ୍ଡ ବେଗରେ ଆସି ପୃଥିବୀ ଦେହରେ ମାଡ ହୋଇଥିଲାବୋଲି ପରେ ଗବେଷଣାରୁ ଜାଣିଲେ । ଏହାର ମାଡ ଫଳରେ ପୃଥିବୀ ପୃଷ୍ଠରେ ଯେଉଁ ପ୍ରଳୟଙ୍କରୀ ଅବସ୍ଥା ସୃଷ୍ଟି ହୋଇଥିଲା ତାହା ପୁଣି ସ୍ଥିତାବସ୍ଥାରେ ପହଞ୍ଚିବାକୁ ଅନେକ ବର୍ଷ ଲାଗିଯାଇଥିଲା । ଏହି ଗ୍ରହାଣୁର ଗତି ଘଣ୍ଟାକୁ ପ୍ରାୟ ୫୦ ହଜାର କିଲୋମିଟର ଥିଲା । ପ୍ରତି ୧୦ ଲକ୍ଷ ବର୍ଷରେ ଥରେ ପୃଥିବୀର ଏଭଳି ଆକାରର ଉଲ୍‌କା ସହ ସଂଘର୍ଷ ଘଟିବାର ସମ୍ଭାବନା ରହିଛି ।

ଗ୍ରହାଣୁ ହେଉଛି ପଥରଖଣ୍ଡ ବା ଧାତବଖଣ୍ଡର ସମାହାର । ଏମାନେ ସୌରମଣ୍ଡଳ ସୃଷ୍ଟିଠାରୁ ଏଠାରେ ରହିଆସିଛନ୍ତି । ବୃହସ୍ପତି ଓ ମଙ୍ଗଳଗ୍ରହ ମଧ୍ୟବର୍ତ୍ତୀ ଅଞ୍ଚଳରେ ରହିଥିବା ଗ୍ରହାଣୁମଣ୍ଡଳରେ ଛୋଟ ଧୂଳିକଣାଠାରୁ ଆରମ୍ଭକରି ବୃହତ ପାହାଡ଼ ଆକାରର ଅନେକ ଗ୍ରହାଣୁ ସବୁବେଳେ ବୁଲୁଛନ୍ତି । ଅନେକଙ୍କର ଆକାର କେତେ କିଲୋମିଟର । ଯେତେବେଳେ ଏହି ଘୂର୍ଣ୍ଣନ ଅବସ୍ଥାରେ ଥିବା ଗ୍ରହାଣୁଖଣ୍ଡ ପୃଥିବୀ ନିକଟକୁ କୌଣସି କାରଣବସତଃ ଚାଲିଆସନ୍ତି ସେତେ୍ବେଳେ ପୃଥିବୀର ମାଧ୍ୟାକର୍ଷଣ ଶକ୍ତିଦ୍ୱାରା ଆକ୍ରାନ୍ତହୋଇ ଏମାନେ ପ୍ରବଳ ବେଗରେ ଆସି ପୃଥିବୀରେ ମାଡହୋଇ ପ୍ରଳୟକାଣ୍ଡ ସୃଷ୍ଟକରିଥାନ୍ତି । ଗ୍ରହାଣୁର ଆକାର ଅନୁସାରେ ପୃଥିବୀ ପୃଷ୍ଠରେ ପ୍ରଳୟର ମାତ୍ରା ନିର୍ଦ୍ଧାରଣ କରାଯାଇଥାଏ । ଏହି ଗ୍ରହାଣୁ ଗୁଡ଼ିକ ଏକ ଗ୍ରହର ଖଣ୍ଡ ବିଖଣ୍ଡିତ ଅଂଶବୋଲି କୁହାଯାଉଛି । ପୃଥିବୀକୁ ଖସିପଡୁଥିବାବେଳେ ପୃଥିବୀର ବାୟୁମଣ୍ଡଳ ସହ ଘର୍ଷଣ ଯୋଗୁଁ ଏହି ଗ୍ରହାଣୁଖଣ୍ଡରେ ହଜାର ହଜାର ଡ଼ିଗ୍ରୀ ଉତ୍ତାପ ସୃଷ୍ଟି ହୋଇଥାଏ ଓ ଅନେକ ଖଣ୍ଡ ରାସ୍ତାରେ ଜଳିଯାଏ । ଏହାକୁ ଆମେ ଉଲ୍‌କାବୋଲି

କହିଥାଉ । ପୃଥିବୀଆଡକୁ ଖସିଆସୁଥିବା ଅନେକ ଗ୍ରହାଣୁ ମଧ୍ୟରୁ ମାତ୍ର କେତୋଟି ପୃଥିବୀଯାଏ ଆସିଥାଏ ଓ ଏହାର ଆକାର ଅନୁସାରେ କ୍ଷତି ଘଟାଇଥାଏ । ଏହି ଗ୍ରହାଣୁ ଖଣ୍ଡଗୁଡ଼ିକ ବାଲି, ପଥର କିମ୍ବା ଲୌହ, ନିକେଲ ବା ଏହାର ମିଶ୍ରିତ ପଦାର୍ଥରେ ଗଠିତ ହୋଇଥାଏ । ଆମେ ଦେଖୁଥିବା ଉଲ୍‌କା ଆକାରରେ ଖସିଆସୁଥିବା ଗ୍ରହାଣୁ ପିଣ୍ଡଗୁଡ଼ିକ ଛୋଟ ଓ ଏଗୁଡ଼ିକ ପଥର ବାଲିଦ୍ୱାରା ଗଠିତ । ପୃଥିବୀକୁ ଆକର୍ଷିତ ହୋଇ ଆସୁଥିବା ଶତକଡ଼ା ୯୦ଭାଗ ଗ୍ରହାଣୁ ଏହି ଶ୍ରେଣୀର । ମାତ୍ର ପୃଥିବୀଯାଏ ଆସି ଏହା ପୃଷ୍ଠରେ ସଂଘର୍ଷ ସୃଷ୍ଟିକରି ପ୍ରଳୟକାଣ୍ଡ ଘଟାଉଥିବା ଅଧିକାଂଶ ଗ୍ରହାଣୁ କଠିନ ଧାତୁରେ ଗଠିତ ।

ସୃଷ୍ଟି ପରଠାରୁ ପୃଥିବୀ ଏଭଳି ଅନେକ ଗ୍ରହାଣୁ ସଂଘର୍ଷର ସମ୍ମୁଖୀନ ହୋଇଆସିଛି ଓ ଏଇଥିରୁ ହିଁ ଅନେକ ପ୍ରଳୟକାଣ୍ଡ ଘଟିଛି । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଉଛି ଯେ ଏଥିରୁ ସ୍ପଷ୍ଟ ସଂଘର୍ଷରୁ ପୃଥିବୀପୃଷ୍ଠରେ ଜୀବଜଗତ ସୃଷ୍ଟି ସମ୍ଭବ ହୋଇପାରିଛି ।

ପୃଥିବୀ ସୃଷ୍ଟି ସମୟରେ ପ୍ରଚଣ୍ଡ ଉତ୍ତପ୍ତ ଅବସ୍ଥା ଭିତରେ ଏହାପୃଷ୍ଠରେ ସୃଷ୍ଟିହୋଇଥିବା ମିଥେନ୍, ଅଙ୍ଗାରକାମ୍ଳ, ଏମୋନିଆ, ଜଳଭଳି ପଦାର୍ଥ ଗ୍ୟାସୀୟ ଅବସ୍ଥାକୁ ପରିବର୍ତ୍ତିତ ହୋଇଯାଉଥିଲା । ଏହି ସମୟରେ ଦୂରବର୍ତ୍ତୀ ଅଞ୍ଚଳରୁ ଆସିଥିବା ଏକାଧିକ ଧୂମକେତୁ ଓ ଗ୍ରହାଣୁର ପୃଥିବୀସହ ସଂଘର୍ଷ ଘଟିଥିବାର ସୂଚନାମିଳେ । ଧୂମକେତୁ ସୃଷ୍ଟି ହେଉଥିବା ଓର୍ଟ ମେଘମାଳା ଅଞ୍ଚଳରେ ସାଧାରଣତଃ ବିଯୁକ୍ତ ୨୬୦ ଡ଼ିଗ୍ରୀ ଉତ୍ତାପରେ ଧୂମକେତୁର ସୃଷ୍ଟି ଓ ଏହା ବରଫ ଓ ଗ୍ୟାସୀୟ ଧୂଳିକଣାରୁ ସୃଷ୍ଟି । କ୍ଷୁଦ୍ର ଗ୍ରହାଣୁର ପୃଥିବୀପ୍ରତି ସେତେ ବିପଦ ନ ଥିବାବେଳେ ସାଧାରଣତଃ ଏକଶହ ମିଟରରୁ ବଡ଼ ଗ୍ରହାଣୁ ପୃଥିବୀପ୍ରତି ବିପଦ ସୃଷ୍ଟି କରିଥାଏ । ଏହି ଆକାରର ପ୍ରାୟ ଏକଲକ୍ଷ ଗ୍ରହାଣୁଖଣ୍ଡ ଏବେ ଗ୍ରହାଣୁ ପୁଞ୍ଜରେ ରହିଥିବାରୁ ପୃଥିବୀପ୍ରତି ବିପଦ ସୃଷ୍ଟିକରୁଥିବାରୁ ଏହାକୁ କୁହାଯାଏ 'ନିଅର ଆର୍ଥ; ଆଷ୍ଟ୍ରଏଡ' ବା ପୃଥିବୀ ନିକଟରେ ଥିବା ଗ୍ରହାଣୁ । ଏକ ହଜାରରୁ ଦୁଇହଜାର ମଧ୍ୟମ ଆକାରର ପୃଥିବୀ ନିକଟବର୍ତ୍ତୀ ଗ୍ରହାଣୁ ରହିଛନ୍ତି ଯାହାର ଆକାର ଏକ କିଲୋମିଟରଯାଏ । ଏହିଭଳି ଗ୍ରହାଣୁର ପ୍ରତି ତିନିଲକ୍ଷ ବର୍ଷରେ ଥରେ ପୃଥିବୀ ସହ ସଂଘର୍ଷ ଘଟିବାର ସମ୍ଭାବନା ରହିଛିବୋଲି ବୈଜ୍ଞାନିକମାନେ ଗବେଷଣାକରି ମତାମତ ଦେଇଥିଲେ । ଏପରିକି ୨୦/୩୦ ବର୍ଷରେ ମଧ୍ୟ ଯେକୌଣସି ସମୟରେ ଏଭଳି ଗୋଟିଏ ଗ୍ରହାଣୁର ପୃଥିବୀ ସହିତ ସଂଘର୍ଷ ଘଟିପାରେ ।



# ବିଭିଷୀକାମୟ ଗ୍ରହାଣୁ

ଗ୍ରହାଣୁ ସଂଘର୍ଷପରେ ପୃଥିବୀପୃଷ୍ଠରେ କେତେପରିମାଣରେ ଶକ୍ତି ସୃଷ୍ଟିହେବ ଓ କିପରିଭାବେ ପ୍ରଳୟ ଅବସ୍ଥା ଦେଖାଦେବ ସେ ବିଷୟରେ ତଥ୍ୟପୂର୍ଣ୍ଣ ଗବେଷଣାତ୍ମକ ଚିତ୍ର ପ୍ରଦର୍ଶନ ହୋଇଥିଲା ଗବେଷଣାଗାର ଭିତରେ । ଚଳଚ୍ଚିତ୍ରରେ ଏ ବିଷୟ ବାଖ୍ୟା କରୁଥିବା ବୈଜ୍ଞାନିକ ସୂଚନା ପ୍ରଦାନକରି କହୁଥିଲେ ଯେ ଏଭଳି ଗ୍ରହାଣୁର ସଂଘର୍ଷ ପରେପରେ ସୃଷ୍ଟି ହେଉଥିବା ପ୍ରଳୟଙ୍କରୀ ଅବସ୍ଥା କଳନାକରି ହେଉ ନାହିଁ । ଏଥିରୁ ସୃଷ୍ଟ ଶକ୍ତିକୁ ୧/୨ $mv^2$ ତଥ୍ୟ ମାଧ୍ୟମରେ ଜାଣିହେବ । m = ଗ୍ରହାଣୁ ବସ୍ତୁତ୍ୱ, V = ଗ୍ରହାଣୁର ଗତି । ଯଦି ଗୋଟିଏ ଏକ କିଲୋମିଟର ଲମ୍ୱର ଗ୍ରହାଣୁ ସେକେଣ୍ଡକୁ ୨୦ କିଲୋମିଟର ବେଗରେ ଆସି ପୃଥିବୀରେ ମାଡହୁଏ ତେବେ ଏଥିରୁ ୧୦ ସହସ୍ର କୋଟି ଟି.ଏନ.ଟି. ଶକ୍ତି ଉତ୍ପନ୍ନ ହେବ, ଯାହାକି ୧୯୪୫ ମସିହାରେ ହିରୋସୀମାଠାରେ ପକାଯାଇଥିବା ପରମାଣୁ ବୋମାର ଶକ୍ତିଠାରୁ ଲକ୍ଷ ଲକ୍ଷ ଗୁଣ ଅଧିକ ।

ଏହାଦ୍ୱାରା ପୃଥିବୀର ଅନେକ ସହର ତତ୍‌କ୍ଷଣାତ ଧ୍ୱଂସ ସ୍ତୂପରେ ପରିଣତହୋଇ ବିଭୀଷିକା ସୃଷ୍ଟିକରିବ । ପୃଥିବୀ ପୃଷ୍ଠରେ ଆଣବିକ ଶୀତଋତୁ ସୃଷ୍ଟିହେବ ଓ ସଂଘର୍ଷପରେ ଏକ ବୃହତ ଅଞ୍ଚଳରୁ ଧୂଳି, ମାଟି, ପଥର ଓ ଅନ୍ୟାନ୍ୟ ପଦାର୍ଥ ବାୟୁମଣ୍ଡକୁ ଚାଲିଯାଇ ବିସ୍ତୃତ ଅଞ୍ଚଳ ଆକାଶକୁ ଘୋଡ଼ାଇରଖିବ । ସୂର୍ଯ୍ୟ ଦେଖାଯିବେ ନାହିଁ ଓ ପୃଥିବୀରେ ଥଣ୍ଡା ଓ ଅନ୍ଧକାର ମାଡିଆସିବ । ସମୁଦ୍ରର ଅବସ୍ଥା ବର୍ଣ୍ଣନାତୀତ ହେବ । ଅନେକ ଅଞ୍ଚଳକୁ ଏହା ମାଡିଯିବ ଓ ବହୁ ଅଞ୍ଚଳର ଜଳ ବାଷ୍ପୀଭୂତ ହେବା ସହ ପ୍ରଚଣ୍ଡ ବେଗରେ ବହୁ ଘରଦ୍ୱାର ଓ ଭୂଭାଗ ନଷ୍ଟହେବ ।

୧୦ କିଲୋମିଟର ଲମ୍ୱର ଗ୍ରହାଣୁ ଯଦି ପୃଥିବୀରେ ମାଡହୁଏ ତେବେ ପୃଥିବୀର ଅବସ୍ଥା କିପରି ହେବ ତାହା କଳ୍ପନା କରାଯାଇପାରୁ ନାହିଁ । ମାତ୍ର ସୌଭାଗ୍ୟ ବସତଃ ଏବେ ସୁଦ୍ଧା ଗ୍ରହାଣୁ ମଣ୍ଡଳରେ ଏହି ଆକାରର ମାତ୍ର ୧୦ଟି ଗ୍ରହାଣୁ ରହିଥିବାର ଜଣାଯାଇଛି । ବୈଜ୍ଞାନିକମାନେ କହିଛନ୍ତି ଯେ ଏ ପ୍ରକାର ବୃହତ ଗ୍ରହାଣୁର

ପୃଥିବୀ ସହିତ ପ୍ରତି ୧୦ କୋଟି ବର୍ଷରେ ଥରେ ସଂଘର୍ଷ ଘଟିବାର ସମ୍ଭାବନା ରହିଛି ମାତ୍ର ଏହା କେବଳ ଏକ ଆନୁମାନିକ ହିସାବ । ଏହିଭଳି ଗ୍ରହାଣୁଖଣ୍ଡର ପୃଥିବୀସହ ପୂର୍ବରୁ ସଂଘର୍ଷ ଘଟିଥିବାର ଜୀବାଶ୍ମ ତଥ୍ୟରୁ ଜଣାପଡ଼ିଛି । କ୍ରିଟାସିୟସ କଳ୍ପରେ ଏଭଳି ବୃହତ ଗ୍ରହାଣୁ ସଂଘର୍ଷ ଓ ତଦଜନୀତ କାରଣରୁ ମେକ୍ସିକୋର ୟୁକାଟାନ ପେନିନସୁଲାରରେ ସୃଷ୍ଟି ହୋଇଥିବା ବୃହତ ଗହ୍ୱର ଆଜିଯାଏ ମଧ୍ୟ ରହିଛି ଓ ଗ୍ରହାଣୁ ସଂଘର୍ଷ ଜନିତ ପ୍ରଳୟଙ୍କରୀ ଅବସ୍ଥା ବିଷୟରେ ପୃଥିବୀବାସୀଙ୍କୁ ଜଣାଇ ଦେଉଛି । ଏହି ଗହ୍ୱରର ବ୍ୟାସ ପ୍ରାୟ ୧୭୦ କିଲୋମିଟର । ତୈଳ ଉତ୍ତୋଳନ ଓ ମହାକାଶ ଯାନରୁ ସଂଗୃହୀତ ଫଟୋଚିତ୍ରରୁ ଏହି ଗହ୍ୱର ବିଷୟରେ ତଥ୍ୟ ସଂଗ୍ରହ କରାଯାଇପାରିଛି । ୧୦ରୁ ୨୦ କିଲୋମିଟର ବ୍ୟାସର ଏକ ଗ୍ରହାଣୁ ସଂଘର୍ଷ ଯୋଗୁଁ ଏଭଳି ଗହ୍ୱର ସୃଷ୍ଟି ହୋଇଥିବାର ବୈଜ୍ଞାନିକମାନେ ମତ ଦେଇଛନ୍ତି । ଏହାର ମାଡ ସମୟରେ ଭୂମିକମ୍ପସହ ମାସମାସ ଧରି ପୃଥିବୀରେ ଶୀତଋତୁ ଓ ଅନ୍ୟାନ୍ୟ ପ୍ରାକୃତିକ ବିଭିଷୀକା ସୃଷ୍ଟି ହୋଇଥିବାର ଜଣାଯାଇଛି ।

ବୈଜ୍ଞାନିକମାନେ ଗ୍ରହାଣୁ ମାଡ଼ ଜନିତ ପ୍ରଳୟ ବିଷୟରେ ଯେଉଁସବୁ ତଥ୍ୟ ସଂଗ୍ରହ କରିଛନ୍ତି ସେଥିରୁ ଜଣାଯାଏ ଯେ ଖ୍ରୀ.ପୂ. ୬୪୪ରେ ଚୀନରେ ଏକ ଗ୍ରହାଣୁ ମାଡ ଯୋଗୁ ଗହ୍ୱର ସୃଷ୍ଟି ହୋଇଥିଲା । ଏହାପରେ ୪୬ ବି.ସି.ରେ ଗ୍ରୀସ୍‌ରେ ମଧ୍ୟ ଏକ ଗ୍ରହାଣୁ ମାଡ ହୋଇଥିଲା । ବର୍ତ୍ତମାନଯାଏ ଗ୍ରହାଣୁ ମାଡ ଜନିତ ପ୍ରାୟ ୮୦ଟି ଗହ୍ୱର ପୃଥିବୀର ବିଭିନ୍ନ ସ୍ଥାନର ସୃଷ୍ଟି ହୋଇଛି । ଏଥିମଧ୍ୟରୁ ସବୁଠାରୁ ବଡ଼ ଗହ୍ୱର



(ଗହ୍ୱର)

ଆମେରିକାର ଆରିଜୋନାଠାରେ ସୃଷ୍ଟି ହୋଇଛି । ଏଠାରେ ପ୍ରାୟ ୪୦ ହଜାର ବର୍ଷତଳେ ଏକ ଗ୍ରହାଣୁ ମାଡ ଯୋଗୁ ଏହି ଗହ୍ୱର ସୃଷ୍ଟି ହୋଇଥିଲା । ଏହି ଗହ୍ୱର ଏକ କିଲୋମିଟରରୁ ବଡ଼ ଓ ୧୫୦ ମିଟର ଗଭୀର । ପ୍ରତ୍ୟେକ ୨୫ ହଜାର ବର୍ଷରେ ଥରେ ଏହିଭଳି ଗ୍ରହାଣୁର ପୃଥିବୀ ସହିତ ସଂଘର୍ଷ ଘଟିବାର ସମ୍ଭାବନା ରହିଛି । ଦକ୍ଷିଣ ପଶ୍ଚିମ ଆଫ୍ରିକାରେ ମଧ୍ୟ ୮୦ ଟନ ଓଜନର ଏକ ବୃହତ ଗ୍ରହାଣୁଖଣ୍ଡ ଓ ଅନ୍ୟ ତିନୋଟି ବୃହତ ଗ୍ରହାଣୁଖଣ୍ଡ ଆବିଷ୍କାର କରାଯାଇଛି । ୩୩ ଟନ ଓଜନର ଗୋଟିଏ ଗ୍ରହାଣୁଖଣ୍ଡକୁ ଗ୍ରୀନଲ୍ୟାଣ୍ଡରୁ ମଧ୍ୟ ଆବିଷ୍କାର କରାଯାଇଛି । ପ୍ରାୟ ପ୍ରତି ୧୦ ହଜାର ବର୍ଷରେ ଥରେ ୧୦ କିଲୋମିଟର ଲମ୍ବର ଗ୍ରହାଣୁ ଖଣ୍ଡର ପୃଥିବୀରେ ମାଡ ହେବାର ସମ୍ଭାବନା ରହିଛି ।



# ବିଂଶ ଶତାବ୍ଦୀର ବୃହତ୍ତର ଗହ୍ବର



ଜୁନ୍ ୩୦ ତାରିଖ ୧୯୦୮ ମସିହା । ହଠାତ୍ ୟୁରୋପର ଆକାଶ ଉଜ୍ଜ୍ୱଳ କମଳାଲେମ୍ବୁ ରଙ୍ଗର କିରଣ ଉଦଭାସିତ ହେଲା । ସାରା ଅଞ୍ଚଳ ଆଲୋକ ଝଲକରେ ଉଜ୍ଜ୍ୱଳ ହୋଇଗଲା । ପଶ୍ଚିମ ୟୁରୋପରେ ଲୋକେ ଏହି ଉଜ୍ଜ୍ୱଳ ଆଲୋକରେ ରାତ୍ରିରେ ବାହାରେ ଠିଆହୋଇ ସମ୍ବାଦପତ୍ର ପଢ଼ିପାରିଲେ । କେତେକେ ଏଭଳି ଆଲୋକର ସତ୍ତା ଜାଣି ନ ପାରିଲେ ମଧ୍ୟ ଆକାଶରୁ ଖସୁଥିବା ଏକ ଉଜ୍ଜ୍ୱଳ ବସ୍ତୁକୁ ବାରିପାରିଲେ । କେତେକ କହିଲେ ବୋଧହୁଏ କେଉଁଠି ଅଗ୍ନି ଉଦ୍‌ଗିରଣ ହେଉଛି । ଋଷର ତୁଙ୍ଗୁସ୍କା ଅଞ୍ଚଳ ଓ ଏକ ହଜାର ମାଇଲ୍ ପରିମିତ ଅଞ୍ଚଳରେ ଏହାର କିଛି ସମୟ ଭିତରେ ମୃଦୁ ଭୂକମ୍ପ ଅନୁଭୂତ ହେଲା । ଏକ ବିସ୍ମୟଜନକ ଆଲୋକ ଶିଖାର ଆବିର୍ଭାବରେ ସେତେବେଳେ ଲୋକେ ବିସ୍ମୟାଭିଭୂତ ହୋଇପଡିଲେ । ଏହାଥିଲା ଏକ ଗ୍ରହାଣୁ ଓ ଏହି ଗ୍ରହାଣୁର ସଂଘର୍ଷପରେ ହୀରୋସୀମା ବୋମାରୁ ସୃଷ୍ଟି ଶକ୍ତିଠାରୁ ହଜାର ହଜାର ଗୁଣ ଅଧିକ ଶକ୍ତି ସେତେବେଳେ ସୃଷ୍ଟି ହୋଇଥିଲା । ତୁଙ୍ଗସ୍କାର ବରଫାବୃତ୍ତ ଅଞ୍ଚଳରେ

ଏହି ଗ୍ରହାଣୁ ଏକ ଗହ୍ୱର ସୃଷ୍ଟି କରିବାସହ ପ୍ରାୟ ଦୁଇ ହଜାର କିଲୋମିଟର ଅଞ୍ଚଳର ଜଙ୍ଗଲ ପୋଡିଯାଇଥିଲା ଓ ଅନେକ ଗଛ ଭାଙ୍ଗିଯାଇ ସେ ଅଞ୍ଚଳରେ ପ୍ରଚଣ୍ଡ ବିଭୀଷିକା ସୃଷ୍ଟି କରିଥିଲା । ଏହି ବରଫାବୃତ୍ତ ଅଞ୍ଚଳରେ ବିଶେଷ ଜନବସତି ନଥିବାରୁ ଜନକ୍ଷୟ ହୋଇ ନଥିଲେ ମଧ୍ୟ ପ୍ରଚୁର ଧୂଳିକଣା ଆକାଶକୁ ଉଠିଯାଇଥିଲା । ଏହି ଗ୍ରହାଣୁ ସଂଘର୍ଷବେଳେ ପ୍ରାୟ ଏକ ହଜାର ହିରୋସୀମା ବୋମାର ଶକ୍ତି ସେଠାରେ ସୃଷ୍ଟି ହୋଇଥିଲା ।

ଏହାର ପରବର୍ତ୍ତୀ ପ୍ରାୟ ୧୯ ବର୍ଷ ଯାଏ କୌଣସି ବୈଜ୍ଞାନିକ ତୁଙ୍ଗସ୍କାର ବରଫ ଆଛାଦିତ, ବୁଦାଳିଆ ବୃକ୍ଷପୂର୍ଣ୍ଣ ଅବ୍ୟବହୃତ ଅଞ୍ଚଳକୁ ଯାଇ ନ ଥିଲେ ମାତ୍ର ଯେତେବେଳେ ସେମାନେ ଗଲେ ସେଠାରେ କୌଣସି ବୃହଦ୍ ଗର୍ତ୍ତ କିମ୍ବା ଗ୍ରହାଣୁର ଅଂଶବିଶେଷ ଦେଖିବାକୁ ପାଇଲେ ନାହିଁ । ନିକଟବର୍ତ୍ତୀ ଅଞ୍ଚଳର ଲୋକେ କହିଲେ ଯେ ଆକାଶରେ ଏକ ବୃହତ୍ତ ଅଗ୍ନିପିଣ୍ଡୁଳା ଏକ ବିକଟାଳ ଶବ୍ଦସହ ଆସି ପୃଥିବୀରେ ପିଟିହୋଇଥିଲା । ସମସ୍ତେ ଅନୁଭବ କରୁଥିଲେ ସତେ ଯେପରି ପ୍ରଚଣ୍ଡ ଲେଲିହାନ ଅଗ୍ନିପିଣ୍ଡୁଳା ତାଙ୍କ ପାଦତଳେ ଆସି ମାଡହୋଇଛି । ପରେ ବୈଜ୍ଞାନିକମାନେ ପୋଡାଜଳା ଜଙ୍ଗଲ ଅଞ୍ଚଳରୁ ଅନେକ କ୍ଷୁଦ୍ର ଗ୍ରହାଣୁ ଅଂଶ ଓ ପାଉଁଶ ସଂଗ୍ରହ କରିବାରେ ସଫଳ ହୋଇଛନ୍ତି । ଏହି ଅଞ୍ଚଳ ଗସ୍ତ କରିଥିବା ବୈଜ୍ଞାନିକ କୁଲିକେ, ଆଲେକଜାଣ୍ଡାର କାଜାନଟସେଭ, ଭିକ୍ଟର ଜୁହୁରାଭଲିଭ ପ୍ରମୁଖ କହିଛନ୍ତି ଯେ ତୁଙ୍ଗସ୍କା ଅଞ୍ଚଳରେ ଯେପରି ଅବସ୍ଥା ସୃଷ୍ଟିହୋଇଛି ତାହା କେବଳ ଏକ ବୃହତ୍ତର ପରମାଣୁ ବୋମା ବିସ୍ଫୋରଣ ଦ୍ୱାରା ହିଁ ସମ୍ଭବପର ହେଲାଭଳି ମନେହୁଏ । ବାୟୁମଣ୍ଡଳରେ ଏହି ଗ୍ରହାଣୁ ଭୂମିସ୍ପର୍ଶ କରିବା ପୂର୍ବରୁ ବାୟୁ ଚାପ ଯୋଗୁଁ ଖଣ୍ଡବିଖଣ୍ଡିତ ହୋଇପଡି ଏକ ବିସ୍ତୃତ ଅଞ୍ଚଳରେ ବିସ୍ଫୋରିତହୋଇ ଅନେକ ଉଦ୍ଭିଦରାଜିକୁ ନଷ୍ଟ କରିଦେଇଥିବାର ଅନୁମାନ କରାଯାଏ ।

ପୃଥିବୀରେ ଏହିଭଳି ଗ୍ରହାଣୁ ମାଡ ଜନିତ କାରଣରୁ ସୃଷ୍ଟିହୋଇଥିବା କାନାଡାର କ୍ୟୁବେକ ଗର୍ତ୍ତ, ଯାହାକି ୨ କୋଟି ବର୍ଷ ତଳେ ସୃଷ୍ଟି ହୋଇଥିବାର ଅନୁମାନ କରାଯାଏ ଏବେ ମଧ୍ୟ ବିଦ୍ୟାମାନ । ଏକ କୋଟି ବର୍ଷତଳେ ସୃଷ୍ଟି ହୋଇଥିବା ତାଜାକିସ୍ଥାନର କାରାବୁଲ ଗର୍ତ୍ତ, ୩ ଲକ୍ଷ ବର୍ଷ ତଳେ ଅଷ୍ଟ୍ରେଲିଆର ମରୁଭୂମିରେ ସୃଷ୍ଟି ଓ୍ୱଲକ୍ରିବ ଗର୍ତ୍ତର ଦୃଶ୍ୟ ବୈଜ୍ଞାନିମାନେ ଗବେଷଣାଗାରର ସମ୍ମିଳନୀ କକ୍ଷରେ ବସି ଦେଖି ଏଠାରେ ମାଡ ହୋଇଥିବା ଗ୍ରହାଣୁର ବିଭୀଷିକା ଓ ଆକାର କଳନା କରୁଥିଲେ ।

## ଭାରତ ମଧ୍ୟ ବାଦଯାଇ ନାହିଁ

ପ୍ରାୟ ୫୨ ହଜାର ବର୍ଷତଳେ ମହାରାଷ୍ଟ୍ରର ଲୋଲାରଠାରେ ଗ୍ରହାଣୁ ସଂଘର୍ଷ ଯୋଗୁଁ ସୃଷ୍ଟିହୋଇଥିବା ଗର୍ତ୍ତ ଏବେ ଜଳପୂର୍ଣ୍ଣ ଅବସ୍ଥାରେ ରହି ଭାରତରେ ଗ୍ରହାଣୁ ସଂଘର୍ଷର ଚିତ୍ର ପ୍ରଦର୍ଶନ କରୁଛି । ଇତି ମଧ୍ୟରେ କୌଣସି ବୃହଦ୍ ଗ୍ରହାଣୁ ଭାରତ ବକ୍ଷରେ ପଡି ନଥିଲେ ମଧ୍ୟ ୧୯୯୬ ମସିହା ଜୁନ୍ ୨୦ ତାରିଖରେ ରାଜସ୍ଥାନ ଅଞ୍ଚଳରେ ଏକ ଗ୍ରହାଣୁ ଖସିପଡି ଏକ ଗର୍ତ୍ତ ସୃଷ୍ଟି କରିଛି ।

ରାଜସ୍ଥାନର ପାଲି ଜିଲ୍ଲାର ପିପିଲିଆ ବାଲାନ ଅଞ୍ଚଳ । ଜୁନ୍ ୨୦ ତାରିଖର ରାତିରେ ପ୍ରଚଣ୍ଡ ଶବ୍ଦକରି ଏକ ଜ୍ୱଳନ୍ତ ଗ୍ରହାଣୁ ଖଣ୍ଡ ଆକାଶରେ ଉଜ୍ୱଳ ଆଲୋକ ରେଖା ସୃଷ୍ଟିକରି ଖସୁଥିବାର ନିକଟସ୍ଥ ଗ୍ରାମର ଲୋକେ ଦେଖିଥିଲେ । ସୌଭାଗ୍ୟ ବସତଃ ଆକାଶରେ ଏହି ଗ୍ରହାଣୁ ୩ ଖଣ୍ଡରେ ବିଖଣ୍ଡିତ ହୋଇ ଜ୍ୱଳନ୍ତ ଅବସ୍ଥାରେ ଏକ ଶସ୍ୟ କ୍ଷେତ୍ରରେ ଖସିପଡିଥିଲା । ଏହି ଖଣ୍ଡବିଖଣ୍ଡିତ ଗ୍ରହାଣୁର ଓଜନ ୧୦ କିଲୋ ଥିଲା ଓ ଏହା କେତେ ଫୁଟ ଗଭୀରର ଓ ଚଉଡାର ଗର୍ତ୍ତ ସୃଷ୍ଟି କରିଥିଲା । ଜୟପୁରସ୍ଥିତ ବିରଳା ପ୍ଲାନେଟୋରୀୟମ୍‌ର ବୈଜ୍ଞାନିକମାନେ ଘଟଣାସ୍ଥଳକୁ ଯାଇ ଏହି ଧାତବ ଗ୍ରହାଣୁର ଜ୍ୱଳନ୍ତ ଅଂଶକୁ ସଂଗ୍ରହ କରିଥିଲେ । ବର୍ତ୍ତମାନଯାଏ ଏହି ଗ୍ରହାଣୁର ୨ଖଣ୍ଡ ଧାତବଅଂଶ ବିରଳା ପ୍ଲାନେଟୋରୀୟମ୍‌ରେ ରଖାଯାଇଛି । ଜୟପୁର ଓ ହାଇଦ୍ରାବାଦ କେନ୍ଦ୍ରରେ ଏହାକୁ ଦେଖିହେବ । କେନ୍ଦ୍ରର ଅଧ୍ୟକ୍ଷ ଡଃ. ବି.ଜି. ସିଦ୍ଧାର୍ଥ କହିଛନ୍ତି ଏହି ଆକାରର ଗ୍ରହାଣୁ କ୍ୱଚିଦ୍ ଦେଖିବାକୁ ମିଳେ । ଏହାର ପରୀକ୍ଷାପରେ ପୃଥିବୀର ସୃଷ୍ଟି ତଥା ମହାକାଶ ବିଷୟରେ ଅନେକ ତଥ୍ୟ ଜଣାପଡିବ ବୋଲି ଏହି ବୈଜ୍ଞାନିକମାନେ ଆଶାବାଦୀ । ଏହା ବ୍ୟତୀତ ଭାରତରେ ଖସିପଡିଥିବା ଅନ୍ୟାନ୍ୟ କେତେକ ଗ୍ରହାଣୁଖଣ୍ଡ ମଧ୍ୟରୁ ୧୯୩୪ ମସିହା ଜୁଲାଇ ୨୩ ତାରିଖରେ ଉତ୍ତରପ୍ରଦେଶର ମୋରିଦାବାଦ ଜିଲ୍ଲାର ଚନ୍ଦ୍ରକାନ୍ତି ମୁଆଜାମ ଗ୍ରାମ ଉପରେ ଖସି ପଡିଥିବା ଭାକୋଇ ଗ୍ରହାଣୁଖଣ୍ଡ ଅନ୍ୟତମ, ଏହା ମୁଖ୍ୟତଃ ଲୁହା ମିଶ୍ରିତ ପଦାର୍ଥରେ ନିର୍ମିତ । ୧୯୬୫ ମସିହା ଅଗଷ୍ଟ ମାସ ୨୫ ତାରିଖରେ ବିହାରର ଗୟା ଜିଲ୍ଲାର ଉନଜୀ ଗ୍ରାମ ଉପରେ ଖସି ପଡିଥିବା ସେରଘଟି ଗ୍ରହାଣୁଖଣ୍ଡ, ୧୯୩୫ ଜୁଲାଇ ୨୯ ତାରିଖରେ ପଟୁଓ୍ୱାରାଠାରେ ପଡିଥିବା ପଟଓ୍ୱାର ଗ୍ରହାଣୁ, ୧୯୮୬ ମଇ ୭ ତାରିଖରେ ପଡିଥିବା ୩୬ କିଲୋ ୭୦୦ ଗ୍ରାମର ପ୍ରଥୁରିଆଖେରୀ ଗ୍ରହାଣୁଖଣ୍ଡ ଅନ୍ୟତମ । ଏଗୁଡ଼ିକ ଦେଶର ବିଭିନ୍ନ ସଂଗ୍ରାହଳୟରେ ସଂରକ୍ଷିତକରି ରଖାଯାଇଛି ।



# ଗ୍ରହାଣୁ ଦର୍ଶନ

ଏବେ ଆତଙ୍କ ସୃଷ୍ଟିକରୁଥିବା ଗ୍ରହାଣୁର ଅବସ୍ଥିତି ଓ ଗତିବିଧି ଦେଖାଇବାକୁ ନିର୍ଦ୍ଦେଶଦେଲେ ଡେଭିଡ୍ । ଉଦ୍ଭାସିତ ହୋଇଉଠିଲା ସ୍ୱଚ୍ଛ ପରଦାରେ ଦୂରବୀକ୍ଷଣ ଯନ୍ତ୍ରଦ୍ୱାରା ସଂଗୃହୀତ ଗ୍ରହାଣୁର ଚିତ୍ର । ଏକ କଳା ପାହାଡ ପ୍ରାୟ ଲମ୍ବି ରହିଥିଲା ଏହି ଗ୍ରହାଣୁଖଣ୍ଡ । ରକ୍ତିମ ମଙ୍ଗଳ ଗ୍ରହର ଖୁବ୍ ନିକଟବର୍ତ୍ତୀ ହୋଇସାରିଥାଏ ସେତେବେଳେକୁ ଏହି ଗତିଶୀଳ ଗ୍ରହାଣୁ । ଡେଭିଡ୍ ପ୍ରଶ୍ନ କରୁଥିଲେ ଏହି ଛିଦ୍ରଯୁକ୍ତ ଗ୍ରହାଣୁ ଖଣ୍ଡର ଆକାର ବୋଧହୁଏ ଏକ କିଲୋମିଟରରୁ ଅଧିକ ହେବ । ଯେତେଦୂର ସମ୍ଭବ ଏହା ଏକ ଧାତବପିଣ୍ଡ । ଅନ୍ୟ ବୈଜ୍ଞାନିକମାନଙ୍କୁ ଏହି ଗ୍ରହାଣୁ ବିଷୟରେ ଅଧିକ ତଥ୍ୟ ସଂଗ୍ରହ ପାଇଁ ଏହାର ଫଟୋଚିତ୍ର ଉଠାଇବାକୁ ନିର୍ଦ୍ଦେଶଦେଲେ ଡେଭିଡ୍ । ଏହି କେନ୍ଦ୍ରର ଦୂରବୀକ୍ଷଣ ଯନ୍ତ୍ରସହ ସଂଯୁକ୍ତ ହୋଇଥିବା ୧ ଦଶମିକ ୫୬ ମିଟରର ଫଟୋଉଠା କ୍ୟାମେରାକୁ କେତେବେଳୁ ସକ୍ରୀୟ କରାଯାଇସାରିଛି । ୧୯୭୦ ମସିହାରେ ଦକ୍ଷିଣ କାଲିଫର୍ଣ୍ଣିଆର ପାଲୋମାର ମାନମନ୍ଦିରରେ ସ୍ଥାପିତ ହୋଇଥିବା କ୍ୟାମେରାଠାରୁ ଏହା ଅଧିକ ଶକ୍ତିଶାଳୀ ଓ ବିଶ୍ୱାସଯୋଗ୍ୟ । ସେଠାରେ ମଧ୍ୟ ପୂର୍ବରୁ ଡେଭିଡ୍ ଅନେକଦିନ କାର୍ଯ୍ୟକରିଛନ୍ତି । ଏହି କେନ୍ଦ୍ର ବ୍ୟତୀତ କାଲିଫର୍ଣ୍ଣିଆର ପାସାଡେନାଠାରେ ଅବସ୍ଥିତ ଜେଟ୍ ପ୍ରୋପୁଲସେନ ଗବେଷଣାଗାର ମଧ୍ୟ ଏହିଭଳି ନୈସର୍ଗିକ ପଦାର୍ଥ ଠାବକରିବା କାର୍ଯ୍ୟରେ ନିୟୋଜିତ ହୋଇଛି । ଗ୍ରହାଣୁ ମଣ୍ଡଳରେ ଥିବା ଛୋଟବଡ଼ ଗ୍ରହାଣୁମାନେ ଅପେକ୍ଷାକୃତ କମ ବେଗରେ ସୂର୍ଯ୍ୟ ଚାରିପାଖରେ ପ୍ରଦକ୍ଷଣ କରୁଥିବାବେଳେ ପୃଥିବୀ ନିକଟବର୍ତ୍ତୀ ଗ୍ରହାଣୁ ବା ପୃଥିବୀଆଡେ ମୁହାଁଇଥିବା ଗ୍ରହାଣୁର ଗତି ଅପେକ୍ଷାକୃତ ଅଧିକ । କ୍ରମାଗତଭାବେ ବୁଲୁଥିବା ଗ୍ରହାଣୁ ଗୁଡ଼ିକ ମଧ୍ୟରେ ଯେତେବେଳେ ସଂଘର୍ଷ ଘଟେ ବିଶେଷଭାବେ ବୃହସ୍ପତି ଗ୍ରହର ଆକର୍ଷଣ ଦ୍ୱାରା ଏମାନେ ଆକର୍ଷିତ ହୋଇ ପରସ୍ପର ସହିତ ପିଟି ହୋଇଯାଇଥାନ୍ତି । ଏହିଭଳି ଅସ୍ଥିର ଅବସ୍ଥାରେ ପହଞ୍ଚିବା ମାତ୍ରେ ଏହି ଗ୍ରହାଣୁ ନିଜର ପ୍ରକୃତ ଗତିପଥ ଛାଡ଼ି ପୃଥିବୀ ଭଳି ସୌରଜଗତର ଅଭ୍ୟନ୍ତର ଅଞ୍ଚଳକୁ ପଶିଆସେ ଓ ବିଶେଷଭାବେ ପୃଥିବୀ ପ୍ରତି ବିପଦ ସୃଷ୍ଟି କରିଥାଏ । ୧୯୯୪ ମସିହାରେ ପୃଥିବୀ ନିକଟରେ ଥିବା ପ୍ରାୟ ୧୬ଟି ବିପଦ ସୃଷ୍ଟିକାରୀ ଗ୍ରହାଣୁକୁ ବୈଜ୍ଞାନିକମାନେ ଠାବ କରିବାରେ ସଫଳତା

ଲାଭ କରିପାରିଛନ୍ତି । 'ସ୍ପେସୱାଚ୍' ଯନ୍ତ୍ର ମଧ୍ୟ ଡେଭିଡ୍‌ଙ୍କ ନିର୍ଦ୍ଦେଶରେ ସଞ୍ଚାଳିତ ହୋଇସାରିଛି । ଏଥିରେ ଫଟୋଉଠାଇବା ପ୍ଲେଟ ସଂଯୋଗ କରା ନ ଯାଇ ଅତ୍ୟାଧୁନିକ ବ୍ୟବସ୍ଥା ଦ୍ୱାରା ଇଲେକଟ୍ରୋନିକ ଆଲୋକ ନିରକ୍ଷକ ସ୍ଥାପନ କରାଯାଇ ଏହାକୁ କମ୍ପ୍ୟୁଟରସହ ସଂଯୋଗ କରାଯାଇଛି । ଏହା ସଂଗ୍ରହ କରୁଥିବା ତଥ୍ୟକୁ କମ୍ପ୍ୟୁଟର ବିଶ୍ଳେଷଣକରି ମହାକାଶ ପିଣ୍ଡର ଗତିବିଧିଠାରୁ ଏହାର କାର୍ଯ୍ୟକଳାପ ବିଷୟରେ ନିର୍ଦ୍ଦିଷ୍ଟ ସୂଚନା ଦେଇପାରୁଛି ।

ମଙ୍ଗଳ ଗ୍ରହ ନିକଟ ତ୍ୟାଗକରି ପୃଥିବୀ ମୁହାଁ ହେଉଥିଲା ଏହି ବିରାଟ ଗ୍ରହାଣୁ । ଡେଭିଡ୍ ତନ୍ନତନ୍ନ କରି ତାର ଗତିପଥକୁ ଲକ୍ଷ୍ୟକରୁଥିଲେ । ଘଣ୍ଟାକୁ ଲକ୍ଷଲକ୍ଷ ମାଇଲ ବେଗରେ ଧାଇଁଛି ଏହି ମହାକାଶ ଦାନବ । ତତ୍‌କ୍ଷଣାତ୍ କମ୍ପ୍ୟୁଟରକୁ କାର୍ଯ୍ୟରେ ଲଗାଗଲା । ଯେଉଁ ବେଗରେ ଏହି ଗ୍ରହାଣୁ ମାଡ଼ିଆସୁଛି ପୃଥିବୀରେ ପହଞ୍ଚିବାକୁ ହୁଏତ ଆଉ କେତେମାସ ଲାଗିବ । ତେବେ ଏହା ପୃଥିବୀକୁ ଅତିକ୍ରମ କରିଯିବାର୍ ସମ୍ଭାବନା କ'ଣ ନାହିଁ ? ପ୍ରଶ୍ନ କରୁଥିଲେ ଡେଭିଡ୍ । ବରିଷ୍ଠ ବୈଜ୍ଞାନିକ ଜ୍ୟାକ୍‌ସନ, ମୁରୀ ପ୍ରମୁଖ ଏହାର ଗତିପଥ ବିଷୟରେ ଗବେଷଣାକରି ମତ ଦେଉଥିଲେ-ପୃଥିବୀ ସହିତ ଏହି ଗ୍ରହାଣୁଖଣ୍ଡର ସଂଘର୍ଷ ଯେପରି ଅନିବାର୍ଯ୍ୟ ତାହାହିଁ ମନେ ହେଉଥିଲା କାରଣ ପୃଥିବୀ ମୁହାଁ ଧାଇଁଥିବା ଏହି ନିର୍ଜୀବ ପିଣ୍ଡ କ୍ରମେ ପୃଥିବୀର ମାଧ୍ୟାକର୍ଷଣ ଶକ୍ତିଦ୍ୱାରା ଆକୃଷ୍ଟ ହୋଇ ଅଧିକ ବେଗଗାମୀ ହେବ ଓ ପୃଥିବୀ ସହିତ ଧକ୍କା ଲାଗିବ । ତେବେ କ'ଣ ଆଉ କିଛି ଉପାୟ ନାହିଁ ? ମହାକାଶରେ ପୃଥିବୀରୁ ପ୍ରେରିତ ରକେଟ୍ ଦ୍ୱାରା କ'ଣ ଏହାକୁ ଧ୍ୱଂସ କରାଯାଇପାରିବ ନାହିଁ ??




(ଗ୍ରହାଣୁ ଚିତ୍ର)

ବର୍ତ୍ତମାନ ପର୍ଯ୍ୟନ୍ତ ଯାହାସବୁ ଗବେଷଣା କରାଯାଇଛି ସେଥିପାଇଁ ଯଥେଷ୍ଟ ସମୟ ପୂର୍ବରୁ ଗ୍ରହାଣୁ ବା ଧୂମକେତୁର ଗତିପଥ ଜଣାପଡିଲେ ଯାଇ ଏହାକୁ ପୃଥିବୀରୁ ରକେଟ ପ୍ରେରଣ କରାଯାଇ ଧ୍ୱଂସକରି ଦିଆଯାଇପାରିବ ମାତ୍ର ଏଥିରେ ଡେରିହେଲେ ଏହାର ପୃଥିବୀ ସହିତ ସଂଘର୍ଷ ନିଶ୍ଚିତ । ଏହାଛଡ଼ା ମହାକାଶରେ ଗ୍ରହାଣୁକୁ କ୍ଷେପଣାସ୍ତ୍ର ପଠାଇ ଧ୍ୱଂସ କରିବା ପୂର୍ବରୁ ଏହାର ଗଠନ ବିଷୟରେ ଜାଣିବା ଜରୁରୀ । ଉତ୍‌କ୍ଷେପଣ କାର୍ଯ୍ୟରେ ସାମାନ୍ୟ ତ୍ରୁଟି ବିଚ୍ୟୁତି ଦେଖାଦେଲେ ଫଳ ଓଲଟା ହେବ ଓ ବୃହତ୍ ଗ୍ରହାଣୁର ଖଣ୍ଡ ବିଖଣ୍ଡିତ ଅଂଶ ପୃଥିବୀର ବିଭିନ୍ନ ସ୍ଥାନରେ ବିଛାଡିହୋଇ ପଡି ଅଧିକ କ୍ଷୟକ୍ଷତି ଘଟାଇବା ନିଶ୍ଚିତ ।

ଆମ ନିକଟରେ ଆଉ ଉପାୟ ନାହିଁ ସାର୍ ! କହୁଥିଲେ ଜ୍ୟାକ୍‌ସନ । ବର୍ତ୍ତମାନ ଏହି ଗ୍ରହାଣୁର ଗତି ଯାହା ଆଉ କେତେମାସ ଭିତରେ ପୃଥିବୀସହ ଏହାର ସଂଘର୍ଷ ନିଶ୍ଚିତ ଓ ଏହାପରେ... ଆଉ କିଛି କହିପାରୁନଥିଲେ ପ୍ରଫେସର ମୁରୀ ଓ ଜ୍ୟାକ୍‌ସନ । ତେବେ ପୃଥିବୀର ଏତେ ବଡ଼ବଡ଼ ବୈଜ୍ଞାନିକମାନେ ଥାଇ ଲାଭ କ'ଣ ? ଯଦି ଅସହାୟଭାବେ ଏହି ଗ୍ରହାଣୁ ସହ ପୃଥିବୀକୁ ଧ୍ୱଂସ ହେବାକୁ ଛାଡିଦିଆଯାଏ ତେବେ ବୈଜ୍ଞାନିକ ଗବେଷଣାର ମୂଲ୍ୟ କ'ଣ ? ଆଶ୍ଚର୍ଯ୍ୟ ହେଉଥିଲେ ଡେଭିଡ୍ । ପୃଥିବୀର ଏକାଧିକ ମାନମନ୍ଦିର ରହିଥିଲେ ମଧ୍ୟ କୌଣସି ଗୋଟିଏ କେନ୍ଦ୍ରର ବୈଜ୍ଞାନିକମାନଙ୍କ ଚକ୍ଷୁକୁ ଏହି ବୃହତ୍ ଗ୍ରହାଣୁ ଏଡାଇଗଲା କିପରି ? ଫ୍ରାନ୍ସର କୋଟେ ଡିଆଜୁର ମାନମନ୍ଦିର, ଆରିଜୋନାର ଲୋୱେଲ ମାନମନ୍ଦିର, ଆମେରିକାର ସାମରିକ ବିଭାଗ ପରିଚାଳିତ ମାନମନ୍ଦିର, ଅଷ୍ଟ୍ରେଲିଆର ମାନମନ୍ଦିର କେହି ମଧ୍ୟ ଏହାର ସୂରାକ ପାଇପାରିଲେ ନାହିଁ । ଏହି ଗ୍ରହାଣୁଆଡେ ସମସ୍ତ ଦୂରବୀକ୍ଷଣ ଯନ୍ତ୍ର, 'ସ୍ପେସୱାଚ' ଯନ୍ତ୍ରକୁ ମୁହାଁଇ ରଖିବାକୁ ନିର୍ଦ୍ଦେଶଦେଲେ ଡେଭିଡ୍ । ତାଙ୍କ ନିର୍ଦ୍ଦେଶରେ ଆଲବର୍ଟ ଗ୍ରହାଣୁର ଗତି ଓ ପୃଥିବୀ ନିକଟରେ ପହଞ୍ଚିବା ସମୟ ହିସାବରେ ଲାଗିଥିଲେ ।

ଡେଭିଡ୍ ବିଶ୍ୱବାସୀଙ୍କୁ ତାଙ୍କର ଏହି ବିଭୀଷିକାମୟ ତଥ୍ୟ ଜଣାଇବା ପୂର୍ବରୁ ଯୁକ୍ତରାଷ୍ଟ୍ରର ରାଷ୍ଟ୍ରପତିଙ୍କୁ ତାଙ୍କର ଗଣନା ବିଷୟରେ ଜଣାଇଦେଲେ । ରାଷ୍ଟ୍ରପତି ସ୍ୱତନ୍ତ୍ର ମନ୍ତ୍ରି ପରିଷଦର ବୈଠକ ଡକାଇଲେ । ତୁରନ୍ତ ପୃଥିବୀ ଉପରକୁ ମାଡି ଆସୁଥିବା ଏହି ବିପତ୍ତିରୁ କିପରି ରକ୍ଷା ମିଳିବ ସେ ବିଷୟରେ ଆଲୋଚନା ଆରମ୍ଭହେଲା । ଅଧିକ ଭୟ ସବୁଆଡେ ଖେଳିଯିବାର ଆଶଙ୍କାଥିବାରୁ ଏହି ତଥ୍ୟ ସଂଗେସଂଗେ

ଜନସାଧାରଣଙ୍କୁ ଜଣାଇଦିଆଗଲା ନାହିଁ । କେବଳ ଏକ ଗ୍ରହାଣୁ ପୃଥିବୀରେ ଖସିପଡିବାର ଆଶଙ୍କା ରହିଛିବୋଲି କୁହାଗଲା ।



# ମହାକାଶରେ ସଂଘର୍ଷ

ଗବେଷଣା କେନ୍ଦ୍ରର ବୃହତ୍ ମ୍ୟାଗ୍ନେଟିକ ଘଣ୍ଟାରେ ଠନ୍ ଠନ୍ ହୋଇ ୨ଟା ବାଜିବାର ସୂଚନା ମିଳିଲାଣି । କେତେବେଳୁ ଆସି ଠିଆ ହେଲେଣି ରୋଜାଲିନା ଡେଭିଡ୍‌ଙ୍କ ନିକଟରେ । ରାତ୍ରିଭୋଜନ ସେତେବେଳଯାଏ କରି ନାହାନ୍ତି ଡେଭିଡ୍ । ନିରବଚ୍ଛିନ୍ନ ଭାବେ ଗବେଷଣା କାର୍ଯ୍ୟରେ ଲାଗିଥିଲେ ଡେଭିଡ୍ । ତାଙ୍କ ଉପରେ ଯେତେବେଳେ ପୃଥିବୀର ସୁରକ୍ଷା ଦାୟିତ୍ୱ ସଂପୂର୍ଣ୍ଣରୂପେ ନିର୍ଭର କରୁଛି ସେତେବେଳେ ସେ ଖାଇବା, ଶୋଇବା ଉପରେ କଣ ଗୁରୁତ୍ୱଦେବେ ? ତଥାପି ସୁସ୍ଥ ଶାରୀରିକ ଓ ମାନସିକ ସ୍ଥିତାବସ୍ଥାପାଇଁ ଖାଦ୍ୟ ଗ୍ରହଣ ଯେ କରିବାକୁ ହେବ ତାଙ୍କୁ । ଦୂରବୀକ୍ଷଣର ପ୍ରମୁଖ ଲକ୍ଷ୍ୟନଳୀ ଗ୍ରହାଣୁ ମଣ୍ଡଳର ସେହି ବୃହତ୍ ମହାକାଶ ଦାନବ ଆଡ଼କୁ ଲମ୍ବି ରହିଥିଲା । ତନ୍ନତନ୍ନ କରି ପରୀକ୍ଷା କାର୍ଯ୍ୟରେ ଲାଗିଥିଲେ ସେ । ରୋଜାଲିନାଙ୍କ ପାଟି ଖୋଲିଲା ରାତ୍ରି ଦୁଇଟା ଟପିଗଲାଣି ଯେ, ତୁମେ ଏତେବେଳଯାଏ ଖାଇ ନାହଁ । ଥରେ ନୁହେଁ ଦୁଇଥର ନୁହେଁ ଚାରିଥର ଏହି କଥା କହିବାପରେ ରୋଜାଲିନାଙ୍କ ହାତ ଡେଭିଡ୍‌ଙ୍କ ଶରୀର ସ୍ପର୍ଶକଲା, ତଥାପି କୌଣସି ପ୍ରତିକ୍ରିୟା ନାହିଁ । ସତେ ଯେପରି ସେ ମୂକ ପାଲଟି ଯାଇଛନ୍ତି । ଦୂରବୀକ୍ଷଣ ଯନ୍ତ୍ରଟି ତାଙ୍କ ଶରୀରର ଏକ ଅଙ୍ଗଭଳି ତାଙ୍କ ଚକ୍ଷୁ ସହିତ ଲାଗିଯାଇଛି । ଏହା ହିଁ ଅନୁଭବ କରୁଥିଲେ ରୋଜାଲିନା । ବାରମ୍ବାର ଡାକରେ ଡେଭିଡ୍‌ଙ୍କ ମୁଖମଣ୍ଡଳ ଦୂରବୀକ୍ଷଣ ଆଡୁ ବୁଲିଲା । ତୁମକୁ ଅନୁରୋଧ, ମୋତେ ଏକୁଟିଆ କାମ କରିବାକୁ ସୁଯୋଗ ଦିଅ । ରୋଜାଲିନା ନିରୁତ୍ତର ଥିଲେ ''ଡିନର ପାଇଁ ବ୍ୟସ୍ତହୁଅ ନାହିଁ, ଯଦି ପାର କଫି କପେ ଦିଅ'' ଗମ୍ଭୀର ଭାବରେ କହୁଥିଲେ ଡେଭିଡ୍ । ରାତ୍ରି ୩ଟା ବାଜିବାର ଉପକ୍ରମ । ଉଜ୍ଜ୍ୱଳ ଆଲୋକରେ ଉଦଭାସିତ ଗବେଷଣାଗାର ପ୍ରକୋଷ୍ଠର ଶୀତତାପ ନିୟନ୍ତ୍ରଣ ନିବୁଜ କୋଠରୀ ଭିତରୁ ଦିନ ବା ରାତ୍ରିର ଭିନ୍ନତା ଜାଣିବା ସମ୍ଭବ ହେଉ ନଥିଲା । ସାଥି ଗବେଷକ ଆଲବର୍ଟ, ଜ୍ୟାକ୍‌ସନ ପ୍ରମୁଖ କେତେବେଳୁ ଗବେଷଣାଗାର ଛାଡିସାରିଥିଲେ, ମାତ୍ର ଡେଭିଡ୍‌ଙ୍କ କାମ ସରୁନଥିଲା । ସେ ଭୋକ ଶୋଷ ଭୁଲିଯାଇଥିଲେ । କଫି କପ୍ ଧରି ରୋଜାଲିନା ପ୍ରବେଶ କରୁଥିଲେ କୋଠରୀ ଭିତରକୁ । ମୁହଁରେ ତରତର ହୋଇ କଫି କପ୍

ଲଗାଇବାକୁ ଉଦ୍ୟମ କରିବାବେଳେ ଡେଭିଡ୍ ଅନୁସନ୍ଧିତ୍ସାର ସହ କହୁଥିଲେ ଦେଖ ରୋଜି - ଦୂରବୀକ୍ଷଣରେ ଲକ୍ଷ୍ୟକର, କି ଭୟଙ୍କର ଏହି ଗ୍ରହାଣୁର ଆକାର, ଏହି ରାକ୍ଷସ ନିର୍ଜୀବପିଣ୍ଡ କିଭଳିଭାବେ କ୍ଷୀପ୍ର ଗତିରେ ଘୂର୍ଣ୍ଣୟମାନ ହୋଇ ମହାକାଶରେ ବିଚ଼ରଣ କରୁଛି । ଆଉ କେତେଟା ଦିନ ହାତରେ ସମୟ ମାତ୍ର । ଆଜି ପୃଥିବୀର କୋଟିକୋଟି ଲୋକ ଆନନ୍ଦମତ୍ତ ରହି କୋଳାହଳମୟ ସୁନ୍ଦର ପୃଥିବୀର ସୌନ୍ଦର୍ଯ୍ୟ ବୃଦ୍ଧି କରୁଛନ୍ତି, ସେହି ସାଧାରଣ ଜନତା କଣ ଜାଣିଲେଣି ତାଙ୍କ ଆଡକୁ ମହାକାଶ ଆଡୁ ଖୁବ୍ ଶୀଘ୍ର ଏକ ମହାବିପତ୍ତି ମାଡିଆସୁଛି ବୋଲି ? ଯେଉଁ ବିପତ୍ତିରୁ ହୁଏତ ପୃଥିବୀବାସୀଙ୍କୁ ରକ୍ଷାକରିବା ଅସମ୍ଭବ ହୋଇପଡିବ । ତେବେ କଣ ପାଇଁ ଆମେ ସବୁ ବୈଜ୍ଞାନିକ ରହିବା, ବୈଜ୍ଞାନିକ ଗବେଷଣାର ମୂଲ୍ୟ କ'ଣ ? ମାତ୍ର ଅବସ୍ଥା ଯେପରି କ୍ରମେ ଜଟିଳ ହେଉଛି ସେଥିରୁ ଆମ ଆଗରେ ଆଉ କିଛି ଉପାୟ ଥିବାପରି ମନେହେଉ ନାହିଁ । ଏଭଳି ବିଭୀଷିକାମୟ ପରିସ୍ଥିତିରେ ବିଶ୍ରାମ ନେବାର ପ୍ରଶ୍ନଉଠୁ ନାହିଁ । ତୁମେ ଯାଅ ରୋଜି ବିଶ୍ରାମ ନିଅ । ମୋତେ ଏକାଏକା ଏହି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟରେ ନିୟୋଜିତ ହେବାକୁ ଛାଡିଦିଅ । ରୋଜାଲିନାଙ୍କ ପାଖରେ ଏହି ପ୍ରଶ୍ନର କୌଣସି ଉତ୍ତର ଦେବାକୁ ଶବ୍ଦ ନଥିଲା ସତେଯେପରି । ସେ ବି ଜଣେ ବରିଷ୍ଠ ବୈଜ୍ଞାନିକ । ବୈଜ୍ଞାନିକର ମନୋବୃତ୍ତି, ଗବେଷଣା ଓ କାର୍ଯ୍ୟକଳାପ ସହ ମଧ୍ୟ ସେ ଉଣାଅଧିକେ ପରିଚିତ । ପୃଥିବୀ ଆଡକୁ ମାଡି ଆସୁଥିବା ଏଭଳି ବିପତ୍ତିବେଳେ ସେ କଣ ସ୍ୱାମୀଙ୍କୁ ଏକାକୀ କାର୍ଯ୍ୟକରିବାକୁ ଛାଡିଦେଇ ବିଶ୍ରାମ ନେଇପାରିବେ ? ନାଁ ସେ ନିକଟରେ ଥିବା କମ୍ପ୍ୟୁଟରକୁ ସଞ୍ଚାଳନ କରିବାରେ ଲାଗିଯାଇଥିଲେ । ଗ୍ରହାଣୁ ସଂପର୍କରେ ମିଳୁଥିବା ତଥ୍ୟର ବିଶ୍ଳେଷଣ ଦ୍ୱାରା ଯଦି କିଛି ସମ୍ଭବ ହୋଇପାରେ ବା ନୂତନ ତଥ୍ୟ ମିଳିପାରେ ତେବେ ତାହା ହୁଏତ ସମସ୍ତଙ୍କପାଇଁ ନୂତନ ମାର୍ଗ ଦର୍ଶନ କରିବାରେ ସହାୟକ ହୋଇପାରିବ ।

ଗଭୀରଭାବେ ଗବେଷଣା କାର୍ଯ୍ୟରେ ଲାଗିଥିଲେ ଡେଭିଡ୍, ତାଙ୍କ ନିକଟରେ କିଏ ଅଛି କି ନାହିଁ, କୌଣସି ସହାୟକ କାର୍ଯ୍ୟକରୁଛି କି ନାହିଁ, ଦିନ ବା ରାତ୍ରି କିମ୍ବା ସେ ଖାଇଛନ୍ତି, ବିଶ୍ରାମ ନେଇଛନ୍ତି କି ନାହିଁ ସେ ବିଷୟରେ ଚିନ୍ତାକରିବାକୁ ସମୟ ନାହିଁ । ହଠାତ୍‌ଟେଲିଫୋନ ଆସିବାର ସୂଚ଼ନା ମିଳିଲା । କୌଣସି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଟେଲିଫୋନ ନହେଲେ ଡେଭିଡ୍‌ଙ୍କ ଯାଏ ଏହା ଆସିବା ଅସମ୍ଭବ । ଟେଲିଫୋନର ସୁଇଚ଼କୁ ଅନ୍‌କଲେ ଡେଭିଡ୍, କହୁଥିଲେ ରାଷ୍ଟ୍ରପତି । ଆପଣ କେତେଦୂର ଅଗ୍ରସର

ହେଲେ ? ଗ୍ରହାଣୁର ଅବସ୍ଥିତି କିପରି ରହିଛି, ଏହାକୁ ଏଡାଇଯିବାର ପଥ କିଛି ନିର୍ଦ୍ଧାରିତ ହେଲା କି ନାହିଁ ? ଅବଶ୍ୟ ସେତେବେଳକୁ ପୃଥିବୀର ଅନେକ ମାନମନ୍ଦିରର ବୈଜ୍ଞାନିକ ଏହି କାର୍ଯ୍ୟକ୍ରମରେ ଲାଗିଯାଇଥିଲେ । ସାଧାରଣ ଜନତା ଏ ବିଷୟରେ କିଛି ଜାଣି ନଥିଲେ ମଧ୍ୟ ବିଶ୍ୱର ବୈଜ୍ଞାନିକ ମହଲରେ ଏ ବିଷୟରେ ଗଭୀର ଆଲୋଡ଼ନ ସୃଷ୍ଟିକରି ସାରିଥିଲା ସେତେବେଳକୁ । ରାଷ୍ଟ୍ରପତିଙ୍କର ଡେଭିଡ୍‌ଙ୍କ ପ୍ରତି ରହିଥିଲା ଅଖଣ୍ଡ ବିଶ୍ୱାସ । ସେ ସେଇଥିପାଇଁ ଅନ୍ୟ କାହାକୁ ଟେଲିଫୋନ ନକରି ଡେଭିଡ୍‌ଙ୍କୁ ଟେଲିଫୋନ କରିଥିଲେ । ତାଙ୍କର ଦୃଢ଼ ବିଶ୍ୱାସଥିଲା ବିଶ୍ୱର ଏଭଳି ଘଡ଼ିସନ୍ଧି ମୁହୂର୍ତ୍ତରେ ଡେଭିଡ୍ ଗବେଷଣାରତ ଥିବେ ନିଶ୍ଚିତ । ତାଙ୍କର ଅନୁମାନ ସତ୍ୟଥିଲା । ଡେଭିଡ୍ ରାଷ୍ଟ୍ରପତିଙ୍କୁ ଅଭିବାଦନ ଜଣାଇ ତାଙ୍କର ଅଗ୍ରଗତି ବିଷୟରେ ସୂଚନା ଦେଉଥିଲେ । ବର୍ତ୍ତମାନ ସୁଦ୍ଧା ଗ୍ରହାଣୁର ସଠିକ ଗତିପଥ ନିର୍ଦ୍ଧାରିତ ହୋଇପାରି ନଥିବାରୁ ଆଉ କିଛି ସମୟପରେ ଗ୍ରହାଣୁ ଧ୍ୱଂସ ଯୋଜନା ବିଷୟରେ କାର୍ଯ୍ୟକ୍ରମ କରାଯିବବୋଲି ସେ ରାଷ୍ଟ୍ରପତିଙ୍କୁ ଆଶ୍ୱାସନା ଦେଇଥିଲେ । ଚିନ୍ତାଗ୍ରସ୍ତ ଭାବେ ଟେଲିଫୋନ ସୁଇଚ୍‌କୁ ବନ୍ଦ କରିଥିଲେ ଡେଭିଡ୍ ।

ରାତ୍ରି ପାହିବାର ଉପକ୍ରମ ହେଲାଣି । ପାହାନ୍ତିଆ ତାରା କ୍ରମେ ଉଜ୍ଜ୍ୱଳ ଆଲୋକ ବିଚ୍ଛୁରିତ କରି ଦିଗ୍‌ବଳୟ ଉପରେ ନିଜର ପ୍ରଭାବ ବିସ୍ତାର କରିବାରେ ଲାଗିଲେଣି । ସେନିଗଲର ରାତ୍ରିର ଶୀତଳ ମରୁଭୂମି କିନ୍ତୁ ସେହିଭଳି ନିର୍ଜୀବଭାବେ ଶୋଇରହିଛି । ଡେଭିଡ୍ ସାରାରାତ୍ରି ବସି ରହିଥିଲେ ଦୂରବୀକ୍ଷଣ ଯନ୍ତ୍ର ନିକଟରେ। ପତ୍ନୀ ରୋଜାଲିନା ଟେବୁଲଉପରେ ଘୁମାଇ ପଡିଥିଲେ କେତେବେଳୁ । ଯାହା ହେଲେ ବି ଡେଭିଡ୍‌ଙ୍କପରି ଗୁରୁଦାୟିତ୍ୱ କଣ ତାଙ୍କ ଉପରେ ଅଛି ? କଅଁଳ ବାଳସୂର୍ଯ୍ୟର କିରଣ ଦିଗ୍‌ବଳୟ ସ୍ପର୍ଶକରିବାକୁ ଉଦ୍ୟମ ଆରମ୍ଭ ହେଲାଣି । ହଠାତ୍ ଡେଭିଡ୍ ଚିତ୍କାର କରି ଉଠିଲେ । ସେ ଟେବୁଲଛାଡି ଉଠିଆସିଲେ ଓ ପାଇଗଲି, ପାଇଗଲି ବୋଲି ଚିତ୍କାରକରି ସତେ ଯେପରି ଆନନ୍ଦରେ ନୃତ୍ୟ କରିବାରେ ଲାଗିଲେ । ତାଙ୍କର ଚିତ୍କାରରେ ନିକଟରେ ଘୁମାଇ ପଡିଥିବା ରୋଜାଲିନାଙ୍କ ନିଦ ଭାଙ୍ଗିଗଲା । ଘଟଣା କଣ ଜାଣିବା ପାଇଁ ସେ ଆଖିଖୋଲି ଯାହା ଦେଖିଲେ ସେଥିରେ ସେ ବି ନିଜକୁ ବିଶ୍ୱାସ କରିପାରିଲେ ନାହିଁ । ଘଟଣା କଣ ? ୨୫ ବର୍ଷ ହେବ ସେମାନେ ଦାମ୍ପତ୍ୟ ଜୀବନ ବିତାଇ ସାରିଛନ୍ତି ମାତ୍ର ଡେଭିଡ୍‌ଙ୍କଭଳି ସ୍ଥିର, ସମ୍ଭ୍ରାନ୍ତ ବୈଜ୍ଞାନିକ କେବେ ଏତେ ଖୁସି ହେବାର ତ ସେ ଦେଖି ନାହାଁନ୍ତି । ତେବେ କଣ କିଛି ସମାଧାନର ବାଟ ତାଙ୍କୁ ମିଳିଗଲା ?

ଦୁରବୀକ୍ଷଣରେ ମହାକାଶ ଦର୍ଶନକରି ଆନନ୍ଦରେ ଚିତ୍କାର କରୁଥିଲେ ଡେଭିଡ୍ । ରୋଜାଲିନା କିଛି ବୁଝି ନ ପାରି ନିଜର ଚକ୍ଷୁକୁ ଦୂରବୀକ୍ଷଣ ଯନ୍ତ୍ରର ଆଇପିସ ନିକଟରେ ଲାଗାଇଲେ । ମାତ୍ର ସେ ତ କିଛି ନୂତନ ପଦାର୍ଥ ଦେଖୁ ନାହାନ୍ତି, ଗୋଟିଏ ଗ୍ରହାଣୁ ହିଁ ତାଙ୍କ ଚକ୍ଷୁ ଆଗକୁ ଆସିଯାଉଥିଲା । କ'ଣ କିଛି ଦେଖିଲ ? ହଁ ଗୋଟିଏ ଗ୍ରହାଣୁ ଚଳନକ୍ଷମ ଅବସ୍ଥାରେ ହିଁ ତ ଦେଖାଯାଉଛି । ଏଥିରେ ଏତେ ଆନନ୍ଦିତ ହେବାର କଣ ଅଛି, ଆଶ୍ଚର୍ଯ୍ୟହୋଇ ବିସ୍ମୟଭରା ନୟନରେ ଚାହୁଁଥିଲେ ରୋଜି ଡେଭିଡ୍‌ଙ୍କ ଆଡେ ।

କଣ କିଛି ଦେଖିଲ ରୋଜି ? ହଁ ଏକ ଗ୍ରହାଣୁ ତ ଦେଖାଯାଉଛି । ଏଥିରେ ଆମର ସମସ୍ୟା ସମାଧାନ ହେବ କିପରି ? ତୁମେ ଟିକେ ଗଭୀରଭାବେ ଗ୍ରହାଣୁଟିକୁ ଲକ୍ଷ୍ୟ କରିଥିଲେ ହୁଏତ ଏ ପ୍ରଶ୍ନ କରିନଥାନ୍ତ ରୋଜି । ଆମପାଇଁ ଆନନ୍ଦଦାୟକ ବିଷୟ ହେଉଛି ଯେଉଁ ପଥରେ ଗ୍ରହାଣୁଟି ପୃଥିବୀଆଡେ ମୁହାଁଇଛି ଠିକ୍ ସେହି ଦିଗରେ ଏହି ଗ୍ରହାଣୁ ଆକୃତିର ଅନ୍ୟ ବସ୍ତୁଟି ଆସୁଛି । ଏହା ବୋଧହୁଏ ଏକ ଗ୍ରହାଣୁ ଖଣ୍ଡ ନୁହେଁ । ମହାକାଶରେ ବୁଲୁଥିବା ଲକ୍ଷ ଲକ୍ଷ ନୈସର୍ଗିକ ବସ୍ତୁ ମଧ୍ୟରୁ ଏହା ମଧ୍ୟ ଏକ ବୃହତ୍ ବସ୍ତୁ । ବୋଧହୁଏ କୌଣସି ଏକ ଧୂମକେତୁର ଖଣ୍ଡ ବିଖଣ୍ଡିତ ଅଂଶ ବା ଅନ୍ୟ କିଛି ନୈସଗିର୍କ ବସ୍ତୁଟିଏ । ତେବେ ହଠାତ୍ ପୃଥିବୀ ନିକଟବର୍ତ୍ତୀ ମହାକାଶରେ ଏହାର ଆବିର୍ଭାବ କାହିଁକି ? ସଂସାରରେ ବୋଧହୁଏ ଆଉ କୌଣସି ପଦାର୍ଥ ଡେଭିଡ୍‌ଙ୍କୁ ଆଜିଯାଏ ଏତେ ଆନନ୍ଦ ଦେଇ ନଥିଲା ଯାହା ସେ ଆଜି ଲାଭ କରିଥିଲେ ଏହି ବୃହତ୍ ସୌରପିଣ୍ଡକୁ ଦେଖିବାପରେ । ବର୍ତ୍ତମାନରୁ ସମସ୍ୟାର ସମାଧାନ ତ ହୋଇ ନାହିଁ । ଆଗକୁ ଆହୁରି ଅନେକ କାର୍ଯ୍ୟ କରିବାକୁ ହେବ । ଏକ ଦିଗରେ ପୃଥିବୀଆଡେ ମୁହାଁଉଥିଲା ଏକ ବୃହତ୍ ଗ୍ରହାଣୁଖଣ୍ଡ, ଅନ୍ୟ ଦିଗରେ ମଧ୍ୟ ପୃଥିବୀଆଡେ ଆସୁଥିଲା ଏକ ନୈସର୍ଗିକ ସୌରପିଣ୍ଡ । ଦୁଇଆଡୁ ପୃଥିବୀ ପ୍ରତି ଲାଗିରହିଥିଲା ବିପତ୍ତି କିନ୍ତୁ ଗ୍ରହାଣୁ ମଣ୍ଡଳ ଛାଡି ଆସୁଥିବା ଗ୍ରହାଣୁର ପୃଥିବୀ ସହିତ ସଂଘର୍ଷ ଯେତେବେଳେ ନିଶ୍ଚିତ ହୋଇ ସାରିଥିଲା । ସେତେବେଳେ ଏହାର ବଭୀଷିକାରୁ ରକ୍ଷା ପାଇବାପାଇଁ ଏକମାତ୍ର ପନ୍ଥା ଥିଲା କୌଣସିମତେ ଏହାକୁ ମହାକାଶରେ ଧ୍ୱଂସ କରିଦେବା । ମାତ୍ର ଏହାକୁ ଧ୍ୱଂସ କରିବାର ସମସ୍ତ ବାଟ ଯେତେବେଳେ ବନ୍ଦହୋଇ ସାରିଥିଲା ଓ ପୃଥିବୀ ଉପରକୁ ଆତଙ୍କର କଳା ବାଦଲ ମାଡି ଆସୁଥିଲା, ଠିକ୍ ସେତିକିବେଳେ ଏହି ନୈସର୍ଗିକ ବସ୍ତୁର ଆବିର୍ଭାବ ଡେଭିଡ୍‌ଙ୍କୁ ନୂତନ ଉନ୍ମାଦନା ଦେଇଥିଲା ।

ଆଉ ସମୟ ନାହିଁ ହାତରେ । ବର୍ତ୍ତମାନ ସମୟରେ ପ୍ରତିଟି ସେକେଣ୍ଡ ହିଁ ମୂଲ୍ୟବାନ । ଚା ବି ପିଇବାକୁ ବେଳ ନାହିଁ । ତଥାପି ରୋଜିଙ୍କ ଅନୁରୋଧରେ ଚା କପଟିକୁ ପାଟିରେ ଦେଉଦେଉ ଡେଭିଡ୍ ଚିତ୍କାର କରୁଥିଲେ "ଦୂରବୀକ୍ଷଣ ଯନ୍ତ୍ର ୧କୁ ନୂତନ ନୈସର୍ଗିକ ପିଣ୍ଡ ଆଡେ ସଜାଡି ରଖ ଜ୍ୟାକ୍‌ସନ ।" ଆଲବର୍ଟଙ୍କୁ ସଂପୂର୍ଣ୍ଣରୂପେ ପୃଥିବୀ ମୁହାଁ ହୋଇଥିବା ଗ୍ରହାଣୁକୁ ଲକ୍ଷ୍ୟ କରବାକୁ ଓ ପ୍ରତି ସେକେଣ୍ଡରେ ଏହାର ଗତିପଥର ଚିତ୍ର ଗ୍ରହଣ କରିବାକୁ ସେ ନିର୍ଦ୍ଦେଶ ଦେଇଥିଲେ । ସମସ୍ତେ ସଜାଗ । ଯାହା କରିବାକୁ କରିବାକୁ ହେବ ଆଗାମୀ ୨୪ ଘଣ୍ଟା ଭିତରେ ନଚେତ ଅନ୍ୟ ପନ୍ଥା ନାହିଁ । ହୁଏତ ସେହି ବୃହତ୍ତ ଗ୍ରହାଣୁର ପୃଥିବୀ ସହିତ ସଂଘର୍ଷ ଘଟି କେଉଁ ଅଞ୍ଚଳରେ ସୃଷ୍ଟିହେବ ପ୍ରଳୟର ତାଣ୍ଡବଲୀଳା ସେହି ଅଞ୍ଚଳ ହୁଏତ ହୋଇପାରେ ନ୍ୟୁୟର୍କର ଘନ ଜନବସତି ଅଞ୍ଚଳ ବା କଲିକତା, କରାଚୀ, ଲଣ୍ଡନ ସହର କିମ୍ବା ସାଗର ଗର୍ଭ ଅଥବା ମରୁଭୂମି । ଯଦି ଏହା ସାଗର ଗର୍ଭରେ ପଡେ ତେବେ ସମୁଦ୍ରରେ ବିଭିଷୀକା ସୃଷ୍ଟିର ସମ୍ଭାବନା । ଆଉ ସ୍ଥଳଭାଗରେ ପଡିଲେ କେତେ ଯେ ଧନଜୀବନ ନଷ୍ଟ ହେବ ତାର ଚିତ୍ର କଳ୍ପନା କରାଯାଇ ପାରୁନାହିଁ ।

ଡେଭିଡ୍‌ଙ୍କ ନିର୍ଦ୍ଦେଶ ଆଗାମୀ ୨୪ ଘଣ୍ଟା ପାଇଁ ଜରୁରୀ ଗବେଷଣା କାର୍ଯ୍ୟ ସଞ୍ଚାଳନ ପାଇଁ ସବୁ କର୍ମଚାରୀ ଗବେଷଣାକେନ୍ଦ୍ରରେ ଉପସ୍ଥିତ ରହିବେ । ଯୁକ୍ତରାଷ୍ଟ୍ର ରାଷ୍ଟ୍ରପତିଙ୍କୁ ଡେଭିଡ୍‌ଙ୍କ କାର୍ଯ୍ୟକ୍ରମ ଜଣାଇ ଦିଆଯାଇସାରିଲାଣି । ତଥାପି ଏଯାଏ ଉଭୟ ନୈସର୍ଗିକ ବସ୍ତୁ ବିପରୀତ ଦିଗରୁ ପୃଥିବୀଆଡେ ମୁହାଁଇଥିଲେ ମଧ୍ୟ ସେମାନଙ୍କ ଭିତରେ ମହାକାଶରେ ସଂଘର୍ଷ ଘଟିବାର ଆଶାନେଇ ସଠିକ ତଥ୍ୟ ମିଳି ନାହିଁ । ପରେ ଆବିଷ୍କୃତ ହୋଇଥିବା ନୈସର୍ଗିକ ସୌରଖଣ୍ଡର ପୃଥିବୀ ସହ ସଂଘର୍ଷ ସମ୍ଭାବନା ଆଶା ନଥିଲା । ଏହା ପୃଥିବୀ ନିକଟ ମହାକାଶ ଅଞ୍ଚଳଦେଇ ଗତିକରିଯିବ ମାତ୍ର ବିପରୀତ ଦିଗରୁ ପୃଥିବୀଆଡେ ମାଡି ଆସୁଥିବା ବୃହଦ୍ ଗ୍ରହାଣୁସହ କଣ ଏହାର ସଂଘର୍ଷ ଘଟିବ ? ଏହା ହିଁ ସ୍ଥିର କରିବା ବା ଜାଣିବା ଥିଲା ବୈଜ୍ଞାନିକମାନଙ୍କ ପାଇଁ ସବୁଠାରୁ ବଡ କାର୍ଯ୍ୟ । ଡେଭିଡ୍ ନିଜେ ଏହି କାର୍ଯ୍ୟକ୍ରମର ତଦାରଖ କରୁଥିଲେ । ଉଭୟ ନୈସର୍ଗିକ ବସ୍ତୁର ଗତିପଥ ତଥା ଗତିବେଗର ପ୍ରତି ସେକେଣ୍ଡରେ ତଥ୍ୟ ସଂଗ୍ରହ କରାଯାଉଥିଲା । ପୃଥିବୀଠାରୁ ପ୍ରାୟ ଲକ୍ଷେ କିଲୋମିଟର ଦୂରଦେଇ ଦ୍ୱିତୀୟ ଗ୍ରହାଣୁଟି ମହାକାଶରେ ଗତିକରି ଯିବ । ଗତିକରି ଯିବାବେଳେ ଏହାର ସଂଘର୍ଷ ନେଇ ଗବେଷଣା କରୁକରୁ ଡେଭିଡ୍‌ଙ୍କ ମୁହଁ ମଳିନ ପଡି ଆସୁଥିଲା । କିଛି ସମୟ ପୂର୍ବରୁ

ସେ ଅତ୍ୟନ୍ତ ଆନନ୍ଦଉଲ୍ଲାସ ଭିତରେ ଯେଭଳି ଭାବେ ମତ୍ତ ରହିଥିଲେ ସେଥିରେ ଯବନିକାପାତ ଯେଭଳି କ୍ରମେ ଘଟିଆସୁଥିଲା । ନିକଟରେ ବସି ପତ୍ନୀ ରୋଜି ଏହାକୁ ଠିକ୍ ଭାବେ ଲକ୍ଷ କରୁଥିଲେ । ମୁହଁରେ ତାଙ୍କର ହତାଶାଭାବ, ମନରେ ବିଶାଦର ଛାୟା । ତେବେ କ'ଣ ପୃଥିବୀରେ ପ୍ରଳୟ ନିଶ୍ଚିତ । ହାୟ ! ଏତେ ବୈଜ୍ଞାନିକ ଗବେଷଣା ସତ୍ୱେ କଣ ଏହି ବିଭୀଷିକାରୁ ପୃଥିବୀ ବାସୀଙ୍କୁ ରକ୍ଷା କରାଯାଇପାରିବ ନାହିଁ !

ଡେଭିଡ୍‌ଙ୍କ ପିଠିରେ କିଛି ଗୋଟାଏ ଲାଗିଲାପରି ସେ ଅନୁଭବ କଲେ । ଏହି ପରିଚିତ ସ୍ପର୍ଶଟି ରୋଜିଙ୍କର କଅଁଳ ହାତ ପାପୁଲି ବ୍ୟତୀତ ଯେ ଅନ୍ୟ କିଛି ନୁହେଁ ତାହା ଜାଣିବାରେ ଡେଭିଡ୍‌ଙ୍କୁ ବେଶୀ ସମୟ ଲାଗିଲା ନାହିଁ । ତାଙ୍କର ଅନ୍ୟମନସ୍କତା ଓ କାର୍ଯ୍ୟବ୍ୟସ୍ତତା ଭିତରେ ଡେଭିଡ୍ ପରିବର୍ତ୍ତିତ ଅସହାୟତା ବୋଧହୁଏ ରୋଜି ଜାଣିପାରିଲେଣି । ଡେଭିଡ୍‌ଙ୍କ ପାଟି ଖୋଲିଲା । ରୋଜି ଆଉ କିଛି ବାଟ ନାହିଁ । କମ୍ପ୍ୟୁଟର ଉପରେ ହାତ ଦେଉ ଦେଉ ସମ୍ପୂର୍ଣ୍ଣ ପୃଥିବୀ, ମହାକାଶ ଓ ଉଭୟ ନୈସର୍ଗିକ ବସ୍ତୁର କଳ୍ପିତ ରେଖାଚିତ୍ର ଅଙ୍କିତ ହୋଇଗଲା କମ୍ପ୍ୟୁଟର ପରଦା ଉପରେ । ଦୁଇଆଡୁ କମ୍ପ୍ୟୁଟର ପରଦାରେ ଗତିକରି ଚାଲିଥିଲେ ନୈସର୍ଗିକ ବସ୍ତୁ ଦୁଇଟି । ଖୁବ ମୁହାଁ ମୁହିଁ ହେଲେଣି ସେହି ଦୁଇଟି ବସ୍ତୁ ମାତ୍ର ଠିକ୍ ସଂଘର୍ଷ ସମୟକୁ ସୂତାଖିଅରେ ଖସି ଚାଲିଯାଉଛି ନୈସର୍ଗିକ ବସ୍ତୁଟି ଗ୍ରହାଣୁଠାରୁ କି ବିଚିତ୍ର ଅବସ୍ଥା, କି ପ୍ରକାର ଅସହାୟ ପରିସ୍ଥିତି ! ମୁଣ୍ଡରେ ହାତଦେଇ ଚିତ୍କାର କରୁଥିଲେ ଡେଭିଡ୍ । ସେତେବେଳକୁ ତାଙ୍କ ନିକଟରେ ରୁଣ୍ଡହୋଇ ସାରିଲେଣି ପ୍ରଫେସର ଆଲବର୍ଟ ପ୍ରମୁଖ ଗବେଷଣାଗାରର ସମସ୍ତ ବୈଜ୍ଞାନିକ ଓ କର୍ମକର୍ତ୍ତା । କାରଣ ଡେଭିଡ୍‌ଙ୍କ ଉପରେ ହିଁ ସମସ୍ତ କାର୍ଯ୍ୟ ନ୍ୟସ୍ତ । ଯଦି ନୈସର୍ଗିକ ବସ୍ତୁ ବା ଗ୍ରହାଣୁ କାହାରି ଆକାର ହୁଏତ କେତେମିଟର ଅଧିକା ହୋଇଥାନ୍ତା ତେବେ ହୁଏତ ଉଭୟଙ୍କ ମଧ୍ୟରେ ସଂଘର୍ଷ ସମ୍ଭବ ହୋଇପାରି ଥାନ୍ତା ଓ ପୃଥିବୀକୁ ବିପର୍ଯ୍ୟୟରୁ ରକ୍ଷା ମିଳିଥାନ୍ତା । ମାତ୍ର କମ୍ପ୍ୟୁଟରରୁ ଯେଉଁ ତଥ୍ୟ ମିଳୁଛି ଉଭୟ ବସ୍ତୁ ଖୁବ୍ ପାଖାପାଖି ପରସ୍ପର ନିକଟଦେଇ ଗତିକରିଯିବେ କିନ୍ତୁ ସଂଘର୍ଷର ସମ୍ଭାବନା ନାହିଁ । ସୂତାଖିଅରେ ହିଁ ସବୁ ଓଲଟ ପାଲଟ ହୋଇଯାଉଛି । ଏହା ବ୍ୟତୀତ ମହାକାଶରେ ଉଭୟଙ୍କ ମଧ୍ୟରେ ଆକର୍ଷଣ ଘଟିବାର କୌଣସି କାରଣ ମଧ୍ୟ ନାହିଁ । ଯଦି କୌଣସିଟିର ଅବସ୍ଥିତିରେ ପରିବର୍ତ୍ତନ ହଠାତ୍ ଘଟିପାରେ ତେବେ ହୁଏତ ସଂଘର୍ଷ ସମ୍ଭବ ! ରାଷ୍ଟ୍ରପତିଙ୍କ ସ୍ୱତନ୍ତ୍ର ଅଫସିରୁ ଟେଲିଫୋନ ଆସିଲାଣି । କି

ଉତ୍ତର ଦେବେ ତାଙ୍କୁ ଡେଭିଡ୍ । ଅସହାୟ ହୋଇପଡିଥିଲେ ଡେଭିଡ୍ । ତାଙ୍କୁ ବାଧ୍ୟହୋଇ ସତ୍ୟ କହିବାକୁ ହେଲା ରାଷ୍ଟ୍ରପତିଙ୍କ ନିକଟରେ । ମହାକାଶରେ ଗ୍ରହାଣୁର ସଂଘର୍ଷ ଆଶା ମାତ୍ର ୧୦ ଭାଗ, ନ ହେବା ଆଶା ୯୦ ଭାଗ । ତେଣୁ ଆମକୁ ପ୍ରସ୍ତୁତ ହେବାକୁ ହେବ । ମାତ୍ର ରାଷ୍ଟ୍ରପତି ଏହି ଭୟଙ୍କର ସମ୍ବାଦ ପୃଥିବୀବାସୀଙ୍କୁ ଜଣାଇବାକୁ ମନାକଲେ । କାରଣ ବିପଦବେଳ ଆସିବ ତ ଆସିବ । ବିପଦ ଯେତେବେଳେ ନିଶ୍ଚିତ ଓ ପୃଥିବୀର କେଉଁଅଞ୍ଚଳରେ ଏହା ସଂଘଟିତ ହେବ ଯେତେବେଳେ ଯାଏଁ ଜଣାନାହିଁ ସେତେବେଳେ ପୃଥିବୀବାସୀଙ୍କୁ ଅଯଥା ଆତଙ୍କିତ କରିବା ଉଚିତ ନୁହେଁ । ଏହା ଜଣାଇଦିଆଗଲେ ସାରା ପୃଥିବୀରେ ହୁଏତ ଏକ ଅଭୁତପୂର୍ବ ଅବସ୍ଥା ସୃଷ୍ଟିହେବ । ଆତଙ୍କର ବନ୍ୟା ପ୍ରବାହିତ ହେବ ଓ ଏହାକୁ ସମ୍ଭାଳିବା ସମ୍ଭବ ହେବ ନାହିଁ । ତଥାପି ଶେଷ ଚେଷ୍ଟା ଜାରୀ ରଖନ୍ତୁ ଡେଭିଡ୍ । "ଆପଣମାନେ ତ ବର୍ତ୍ତମାନ ପୃଥିବୀର ରକ୍ଷାକର୍ତ୍ତା" କହୁଥିଲେ ରାଷ୍ଟ୍ରପତି । ରିସିଭର ରଖୁଥିଲେ ଡେଭିଡ୍ ରାଷ୍ଟ୍ରପତିଙ୍କ ସହ ବାର୍ତ୍ତାଳାପ କରି । ଉପାୟ ଆଉ କ'ଣ ଅଛି ? ବହୁବାର ଚିନ୍ତାକରି ସେ ବିଫଳ ହେଉଥିଲେ । ତାଙ୍କ ଆଗରେ ସମସ୍ତ ରାସ୍ତା ବନ୍ଦ । ପୃଥିବୀ ପ୍ରତି ବିପଦ ବୋଧହୁଏ ନିଶ୍ଚିତ ।

ଆଉ ୪ ଘଣ୍ଟା ମାତ୍ର ବାକି । କ୍ଷୀପ୍ର ଗତିରେ ପରସ୍ପର ପଥରେ ଆଗେଇଥିଲେ ଦୁଇଟି ନୈସର୍ଗିକ ଭୀମକାୟ ନିର୍ଜିବ ପିଣ୍ଡ ନିଜ ନିଜର ଗତିପଥରେ । ଆଉ ପୃଥିବୀର ଅର୍ଦ୍ଧେକ ଲୋକ ଆରାମରେ ଗଭୀର ରାତ୍ରିରେ ନିଦ୍ରାରେ ଶୋଇରହି ଥିବାବେଳେ ଅନ୍ୟ ଅର୍ଦ୍ଧେକ ଅଞ୍ଚଳର ଲୋକ ଦିନର କାର୍ଯ୍ୟରେ ଚଳଚଞ୍ଚଳ ରହିଥିଲେ । ଆଉ ତ ମାତ୍ର କେତେ ଘଣ୍ଟା । ଗ୍ରହାଣୁଟି ମାଡହେବ ବୋଧହୁଏ ପାହାନ୍ତିଆ ପ୍ରହରରେ ନିଦ୍ରାର ଶେଷ ସ୍ପର୍ଶ ଅନୁଭବ କରୁଥିବା ଅଞ୍ଚଳ ଉପରେ । ଏହି ନିରୀହ ନରନାରୀଙ୍କ ଭିତରୁ ଅନେକ ହୁଏତ ଶେଷ ପ୍ରହରରେ ଆନନ୍ଦଦାୟକ ସ୍ୱପ୍ନରେ ମସଗୁଲ ରହିଥିବେ, ମା କୋଳରେ ଶିଶୁ, ପତିପତ୍ନୀ, ବୃଦ୍ଧବୃଦ୍ଧା, କେତେ ପଶୁପକ୍ଷୀ, ପ୍ରାଣୀଙ୍କ ପାଇଁ ହୁଏତ ସେହି କାଳରାତ୍ରି ହେବ ଶେଷ ରାତ୍ରି । ସେମାନଙ୍କ ପାଇଁ ରାତ୍ରି ଆଉ ପାହିବ ନାହିଁ । ଦିନର ସ୍ୱଚ୍ଛ ସ୍ପର୍ଶ ସେମାନେ ଆଉ ଅନୁଭବ କରିପାରିବେ ନାହିଁ । ଘନ ଘନ ଦୀର୍ଘଶ୍ୱାସ ଛାଡ଼ିବା ବ୍ୟତୀତ ଆଉ କାହାନିକଟରେ କୌଣସି ବାଟ ନାହିଁ । ନିଜର ଗବେଷଣା କୋଠରୀରେ ଏପାଖ ସେପାଖ ହୋଇ ପଦଚାଳନା କରୁଥିଲେ ଡେଭିଡ୍ । ସେ ଯେପରି ପାଗଳ ହୋଇଯିବେ । ଯଦି ପୃଥିବୀବାସୀଙ୍କୁ ଏଭଳି

ଅସହାୟଭାବେ ତାଙ୍କରି ଆଗରେ ମରିବାକୁ ଦିଆଯାଏ ତେବେ ଗବେଷଣାର ମୂଲ୍ୟ କ'ଣ, ବୈଜ୍ଞାନିକମାନେ ରହି ଆଉ କି କାମ କରିପାରିଲେ ? ରାତ୍ରି ଘଣ୍ଟାରେ ୨ଟା ଠନ୍ ଠନ୍‌ହୋଇ ବାଜିଉଠିଲା, ଡେଭିଡ୍‌ଙ୍କ ହୃଦ୍‌ସ୍ପନ୍ଦନ ଆଉ ଟିକେ ବଢ଼ିଗଲାଣି । ଆଉ ମାତ୍ର ୨ଘଣ୍ଟା ସମୟ । କମ୍ପ୍ୟୁଟର ପରଦାରେ ଧାଇଁଥିଲେ ଦୁଇଟି ଜଡ ରାକ୍ଷସ । ପୃଥିବୀ କ୍ରମେ ନିକଟତର ହେଉଥିଲା । ରୋଜିଙ୍କ ଆଖିରୁ ଗଡୁଥିଲା ଧାର ଧାର ଲୁହ । ଆଉ ମାତ୍ର ୨ଘଣ୍ଟା ପରେ କେତେ ନିରୀହ ବ୍ୟକ୍ତି କିଛି ଜାଣିବା ପୂର୍ବରୁ ଶବରେ ପରିବର୍ତ୍ତିତ ହୋଇଯିବେ, କେତେ କୋଠାବାଡ଼ି, ଧନସଂପତ୍ତି ଧ୍ୱଂସ ପାଇଯିବ, କି ପ୍ରକାର ଅବସ୍ଥା ସୃଷ୍ଟିହେବ । କଳ୍ପନା ଚକ୍ଷୁରେ ସେ କେବଳ ଅନ୍ଦାଜ କରିଚାଲିଥିଲେ ସେହିସବୁ ଅବସ୍ଥା ଗୁଡ଼ିକୁ । ସମସ୍ତେ ନିରୁପାୟ, ହତାଶାର ଚିହ୍ନ ସମସ୍ତଙ୍କ ମୁହଁରେ ସ୍ପଷ୍ଟ ବାରି ହୋଇପଡୁଥିଲା । ଟେଲିଫୋନ ଶବ୍ଦ ଶୁଭିଲାଣି କ୍ରିଂ, କ୍ରିଂ, କ୍ରିଂ..... ରାଷ୍ଟ୍ରପତିଙ୍କ ଫୋନ ବୋଧହୁଏ । ସେ ମଧ ରାତ୍ରି ଅନିଦ୍ରାହୋଇ ବସି ରହିଛନ୍ତି । ମାତ୍ର ଆଉ କଣ ଶୁଭ ସମ୍ବାଦ ଶୁଣାଇବେ ତାଙ୍କୁ ଡେଭିଡ୍ ! ଘଣ୍ଟାରେ ଠନ୍ ଠନ୍ ହୋଇ ୩ଟା ବାଜିଲାଣି । ତା'ପରେ ଧ୍ୱଂସର ଲୀଳା ସୃଷ୍ଟି । ଘଣ୍ଟାକୁ ଆଉ ଚାହୁଁ ନ ଥିଲେ ଡେଭିଡ୍ । ତାଙ୍କୁ ଦେଖାଯାଉଥିଲା ସବୁଆଡେ ଧ୍ୱଂସର କରାଳ ଛାୟା । ସେହି ବିସ୍ଫୋରଣରେ ମୃତ୍ୟୁବରଣ କରିବା ବ୍ୟକ୍ତି ଯେତିକି କଷ୍ଟ ନ ଭୋଗିବେ ତା'ଠାରୁ ଅଧିକ କଷ୍ଟ ଅନୁଭବ କରୁଥିଲେ ଡେଭିଡ୍ । ତିଳତିଳ ହୋଇ ସବୁ ସ୍ତରରୁ କଷ୍ଟ ଭୋଗିବା ଛଡ଼ା ତାଙ୍କ ନିକଟରେ ଆଉ କୌଣସି ବାଟ ନ ଥିଲା ।

ଆଉ ୧ଘଣ୍ଟା ସମୟ ରହିଲା । ଏହାପରେ ଆରମ୍ଭ ହେବ ବିଭୀଷିକା । ଡେଭିଡ୍, ରୋଜାଲିନା, ଆଲ୍‌ବର୍ଟ, ଜ୍ୟାକସନ ପ୍ରମୁଖ ସମସ୍ତେ ନୀରବ । ଏ ବିପତ୍ତିରୁ ଆଉ ବର୍ତ୍ତିଯିବାର ବାଟ ନାହିଁ । ହଠାତ୍ କମ୍ପ୍ୟୁଟର ପରଦାରେ ଉଦଭାସିତ ହେଲା ଏକ ବିସ୍ଫୋରଣ । ଜଳି ଉଠିଲା ଅନେକ ଅଗ୍ନି ସ୍ଫୁଲିଙ୍ଗ, ଆଉ ଆଲୋକିତ ହୋଇଗଲା ଅନ୍ଧକାରଛନ୍ନ ମହାକାଶ କିଛି ସମୟପାଇଁ । ଏକା ସଙ୍ଗରେ ସମସ୍ତେ ଧାଇଁଗଲେ କମ୍ପ୍ୟୁଟର ଆଡେ ଏ କି ଆଶ୍ଚର୍ଯ୍ୟ କଥା । ନୈସର୍ଗିକ ବସ୍ତୁଟି ପୃଥିବୀ ଅତିକ୍ରମ କରି ଆଗକୁ ଚାଲିଗଲାଣି କେତେବେଳୁ ମାତ୍ର ହଠାତ୍ ଏହା ସହିତ କୌଣସି ବସ୍ତୁର ସଂଘର୍ଷ ନ ଘଟି ମଧ ବିସ୍ଫୋରଣ ଘଟିଲା କିପରି ? କଣ ଏହି ବିସ୍ମୟ ? ଆଶ୍ଚର୍ଯ୍ୟାନ୍ୱିତ ଭାବେ ଚାହିଁ ରହିଥିଲେ ଏହାର ବିସ୍ମୟ ଜାଣିବାକୁ ଡେଭିଡ୍ ପ୍ରମୁଖ ବିଶ୍ୱର ବରିଷ୍ଠ ବୈଜ୍ଞାନିକ ଗୋଷ୍ଠୀ, ମାତ୍ର ଆପଣାଛାଏଁ ବିସ୍ଫୋରିତ ହେବାର ରହସ୍ୟ

ସେତେବେଳଯାଏ ଜଣାପଡି ନ ଥିଲା । ଏହି ବିସ୍ଫୋରଣ ଅପେକ୍ଷାକୃତ ଛୋଟ ଧରଣର ଥିଲା ଏବଂ ଅନେକ ପର୍ବତର ସମାରୋହରେ ଗଠିତ ଏହି ନୈସର୍ଗିକ ପିଣ୍ଡର କିଛି ଅଂଶ ମାତ୍ର ବିସ୍ଫୋରଣ ଦ୍ୱାରା କ୍ଷତିଗ୍ରସ୍ତ ହୋଇଥିଲା ।

ଆକାଶରୁ ଉଭେଇଗଲାଣି ବିସ୍ଫୋରିତ ଅଗ୍ନି କଣିକାଗୁଡ଼ିକ କେତେବେଳୁ । ଏଥିରୁ ଅନେକ ଖଣ୍ଡ ପୃଥିବୀର ମାଧ୍ୟାକର୍ଷଣ ଶକ୍ତିଦ୍ୱାରା ଆକର୍ଷିତ ହୋଇ ପୃଥିବୀ ଆଡକୁ କ୍ଷୀପ୍ର ଗତିରେ ଖସୁଥିଲା ଓ ବାଟରେ ଜଳିପୋଡି ପାଉଁଶରେ ରୂପାୟିତ ହୋଇ ପୃଥିବୀ ପୃଷ୍ଠରେ ମାତ୍ର ଏହାର ପାଉଁଶ ଖସିପଡୁଥିଲା । ଡେଭିଡ୍ କହିଲେ ବୋଧହୁଏ ପୃଥିବୀ ପ୍ରଦକ୍ଷିଣ କରୁଥିବା କୌଣସି ଏକ ମହାକାଶ ଷ୍ଟେସନ ସହ ଏହି ପିଣ୍ଡର ଧକ୍କା ହୋଇ ଏଭଳି ବିସ୍ଫୋରଣ ଘଟିଛି ! ଏହା ବ୍ୟତୀତ ଅନ୍ୟ କୌଣସି କାରଣ ନାହିଁ । ପୃଥିବୀ ଚାରିପାଖରେ ଏବେ ମଣିଷଦ୍ୱାରା ପ୍ରେରିତ ହୋଇ ଅହରହ କ୍ଷୀପ୍ର ବେଗରେ ବୁଲୁଛି ହଜାର ହଜାର କୃତ୍ରିମ ଉପଗ୍ରହ, ମହାକାଶ ଷ୍ଟେସନ । ଏଗୁଡ଼ିକ ମଧ୍ୟରୁ ମହାକାଶ ଷ୍ଟେସନ ଗୁଡ଼ିକର ବେଗ ଘଣ୍ଟାରେ ହଜାର ହଜାର କିଲୋମିଟର ଓ ଅନେକର ଓଜନ ୫୦ଟନରୁ ଅଧିକ । ବୋଧହୁଏ ଏଭଳି ଏକ ମହାକାଶ ଷ୍ଟେସନର ସଂଘର୍ଷ ଘଟିଛି ଏହି ନୈସର୍ଗିକ ବସ୍ତୁ ସହ ।

ଏ ବିଷୟରେ ଚିନ୍ତା କରିବାକୁ ଆଉ ସମୟ ନଥିଲା । ହାତରେ ଆଉ ଅଳ୍ପ ସମୟ ମାତ୍ର । ଦୂରବୀକ୍ଷଣ ଯନ୍ତ୍ରକୁ ସେହି ଗ୍ରହାଣୁ ଖଣ୍ଡ ଆଡକୁ ବୁଲାଇ ନେଉ ନେଉ ଡେଭିଡ୍ ଆଶ୍ଚର୍ଯ୍ୟ ହୋଇଗଲେ । ତାଙ୍କ ମୁହଁରେ ପୁଣିଥରେ ସ୍ମିତ ହାସ୍ୟରେଖା ପ୍ରକଟୀତ ହେଲା, ଗତ କେତେ ଘଣ୍ଟାକାଳ ସେ ଓ ସହକର୍ମୀମାନେ ସବୁପ୍ରକାର ସମ୍ଭାବ୍ୟ ରାସ୍ତାର ଅନ୍ବେଷଣରେ ଯାଇ ବିଫଳ ହୋଇଥିଲେ ଓ ଗବେଷଣା ଯନ୍ତ୍ରପାତି ସହ ଅନେକଙ୍କର ସମ୍ପର୍କ ତୁଟି ଯାଇଥିଲା । ମାତ୍ର ଏ କଣ ଦେଖୁଛନ୍ତି ସିଏ । ଛୋଟ ଧରଣର ବିସ୍ଫୋରଣ ପରେପରେ ଆଗେଇଚାଲିଥିଲା କ୍ଷୀପ୍ର ବେଗରେ ମହାକାଶରେ ସେହି ନୈସର୍ଗିକ ପିଣ୍ଡ ଠିକ୍ ଗ୍ରହାଣୁ ଆଡେ । ଉଭୟଙ୍କର ମଧ୍ୟରେ ଦୂରତ୍ୱ କମି କମି ଆସୁଥିଲା । ଉଭୟଙ୍କର ଦିଗ ଓ ବେଗ ତୁରନ୍ତ ନିର୍ଣ୍ଣୟ କରିବାକୁ ଆଲବର୍ଟଙ୍କୁ ନିର୍ଦ୍ଦେଶଦେଲେ ଡେଭିଡ୍ । ଡେଭିଡ୍‌ଙ୍କ ଆବଭାବ ଦେଖି ପୁଣି ସମସ୍ତଙ୍କ ମନରେ ଆଶାର ସଞ୍ଚାର ହେଲା । ନିସ୍ତେଜ ହୋଇପଡିଥିବା ଗବେଷକ, ବୈଜ୍ଞାନିକମାନେ ନବ ଉନ୍ମାଦନାରେ ଧାଇଁଗଲେ ଗବେଷଣା ଯନ୍ତ୍ରପାତି ଆଡେ । ସମସ୍ତେ ଆନନ୍ଦିତ ।

# ପୃଥିବୀ ରକ୍ଷାର ଯୋଜନା



ପୃଥିବୀ
Earth
ସୂର୍ଯ୍ୟ
Sun
ପୃଥିବୀର କକ୍ଷପଥ
Earth's orbit
ପରିବର୍ତ୍ତିତ ପଥ
Altered path
Point of deflection
Missile orbit
କ୍ଷେପଣାସ୍ତ୍ରର ଗତିପଥ
Asteroid ଗ୍ରହାଣୁ
ଗ୍ରହାଣୁ ପଥ
Asteroid path
ଯଦି ଏକ ଗ୍ରହାଣୁର ପୃଥିବୀ ସହିତ ସଂଘର୍ଷ ସମ୍ଭାବନା ଥାଏ ତେବେ ପୃଥିବୀରୁ ଏକ ପରମାଣୁ କ୍ଷେପଣାସ୍ତ୍ର ପ୍ରୟୋଗ କରାଯାଇ ଏହାର ଗତିପଥକୁ ପରିବର୍ତ୍ତନ କରାଯାଇ ପାରିବ
ବିସ୍ଫୋରିତ ପୃଥିବୀ

ଡେଭିଡ୍‌ଙ୍କ ଚକ୍ଷୁରୁ ବହୁଥିଲା ଆନନ୍ଦାଶ୍ରୁ । ଭଗବାନଙ୍କର ଅନ୍ତିମ ଇଚ୍ଛାଯୋଗୁ ସୁନ୍ଦର ପୃଥିବୀ ରକ୍ଷା ପାଇଗଲା । ବିପରୀତଗାମୀ ୨ଟି ଜଡପିଣ୍ଡ ଧାଉଁଥିଲା ଘଣ୍ଟାପ୍ରତି ଲକ୍ଷଲକ୍ଷ କିଲୋମିଟର ବେଗରେ ଗୋଟିଏ ସରଳ ରେଖାରେ । ପ୍ରଥମ ବିସ୍ଫୋରଣ ପରେ ନୈସର୍ଗିକ ଜଡପିଣ୍ଡର ଗତି ପରିବର୍ତ୍ତିତ ହୋଇଯାଇଥିଲା ଏବଂ ସୌଭାଗ୍ୟ ବସତଃ ଏହାର ଗତି ଗ୍ରହାଣୁ ଦିଗରେ ନିର୍ଦ୍ଧାରିତ ହୋଇଯାଇଥିଲା । ରାଷ୍ଟ୍ରପତିଙ୍କର ଶେଷ ଟେଲିଫୋନ ଆସିଗଲାଣି । ଡେଭିଡ୍ ତାଙ୍କର ବାର୍ତ୍ତା ରାଷ୍ଟ୍ରପତିଙ୍କୁ ଜଣାଇ ସାରିଲେଣି । ଅବଶେଷରେ ସେହି ଶେଷ ମୂହୁର୍ତ୍ତ ଉପସ୍ଥିତ ହେଲା । ପ୍ରଚଣ୍ଡ ବେଗରେ ଦୁଇଟି ମୃତ ପାହାଡ ଖୁବ ଜୋରରେ ପିଟିହେଲେ ମହାକାଶରେ । ଏଥିରୁ ସୃଷ୍ଟିହେଲା ପ୍ରଚଣ୍ଡ ବିସ୍ଫୋରଣ, ଅଗ୍ନି ପିଣ୍ଡୁଳାରେ ଶତସୂର୍ଯ୍ୟର ଆଲୋକନେଇ ଉଦ୍‌ଭାସିତ ହେଲା ମହାକାଶର ଜନମାନବଶୂନ୍ୟ ବିସ୍ତୀର୍ଣ୍ଣ ଅଞ୍ଚଳ । ଟେଲିସ୍କୋପ ସାହାଯ୍ୟରେ ବିଭୀଷିକାମୟ ଏହି ଚିତ୍ର ପୃଥିବୀର କେତେଜଣ ବୈଜ୍ଞାନିକଙ୍କ ବ୍ୟତୀତ ଅନ୍ୟ କେହି ଦେଖି ନଥିଲେ । ମାତ୍ର ଏହି ବିସ୍ଫୋରଣ ପ୍ରକାଣ୍ଡ ଶବ୍ଦ ଓ ଲେଲିହାନ ଅଗ୍ନିଶିଖା ଦେଖି ସ୍ତମ୍ଭିଭୂତ ହୋଇଯାଇଥିଲେ ବୈଜ୍ଞାନିକମାନେ । ଏଥିରୁ ସୃଷ୍ଟ କେତେକ ବିଶାଳଖଣ୍ଡ ଉଲକା ରୂପେ ପୃଥିବୀ ଆକାଶ ମଣ୍ଡନ କଲା । ପାହାନ୍ତିଆ ପହରରେ ଉଠିଥିବା ଅନେକ ଲୋକ ଏକା ଥରକେ ଅନେକ ଉଲକା ଆକାଶରୁ ଖସୁଥିବାର ଦେଖି ଆଶ୍ଚର୍ଯ୍ୟ ହେଲେ । ବୈଜ୍ଞାନିକମାନେ ପରସ୍ପରକୁ ଆନନ୍ଦରେ ଆଲିଙ୍ଗନ କରୁଥିଲେ । ରାଷ୍ଟ୍ରପତି ମଧ୍ୟ ଏହି ଦୃଶ୍ୟ ଦେଖୁଥିଲେ । ରାଷ୍ଟ୍ରପତିଙ୍କଠାରୁ ଶୁଭେଚ୍ଛାପୂର୍ଣ୍ଣ ଟେଲିଫୋନ ଆସୁଥିଲା । ଡେଭିଡ୍ କହୁଥିଲେ "ସାରା ପୃଥିବୀକୁ ଏକ ଅଦୃଶ୍ୟ ଶକ୍ତି ହିଁ ରକ୍ଷା କରିଦେଲା ।"ରାଷ୍ଟ୍ରପତି କହୁଥିଲେ "ମଣିଷ ହିଁ ଏ ଅଦୃଶ୍ୟ ଶକ୍ତି । ଯଦି ମଣିଷ ମହାକାଶ ଷ୍ଟେସନ ପ୍ରେରଣ କରି ନଥାନ୍ତା ତେବେ କଣ ଆଜି ପୃଥିବୀକୁ ଗ୍ରହାଣୁ ମୁହଁରୁ ରକ୍ଷାକରାଯାଇ ପାରିଥାନ୍ତା ?" ଧନ୍ୟବାଦ ଜଣାଉଥିଲେ ରାଷ୍ଟ୍ରପତି ସମସ୍ତ ବୈଜ୍ଞାନିକଙ୍କୁ ସେମାନଙ୍କର ଅବିଶ୍ରାନ୍ତ କାର୍ଯ୍ୟପାଇଁ । ଗତ ୧୫ ଦିନର ଅବିଶ୍ରାନ୍ତ ପରିଶ୍ରମ, ମାନସିକ ଦୁଶ୍ଚିନ୍ତା ଓ ଅନେକ ସମସ୍ୟାକୁ ନେଇ କାଳକାଟିଥିବା ଭୋକିଲା ଡେଭିଡ୍ ଓ ରୋଜି ଫେରୁଥିଲେ ବିଶ୍ରାମ କକ୍ଷକୁ । ତା' ପରଦିନ ବିସ୍ତୃତଭାବେ ଏହି ଚମକପ୍ରଦ ଗ୍ରହାଣୁ ସଂଘର୍ଷ ତଥ୍ୟ ପ୍ରକାଶିତ ହୋଇଥିଲା ପୃଥିବୀର ସମସ୍ତ ସମ୍ବାଦପତ୍ରରେ ମୁଖ୍ୟ ସମ୍ବାଦ ରୂପେ । ଏହି ସମ୍ବାଦ ପଢ଼ି ପୃଥିବୀବାସୀ ଏକ ସ୍ୱରରେ ସ୍ୱାଗତ୍ କରୁଥିଲେ ବୈଜ୍ଞାନିକମାନଙ୍କୁ ଓ ସେମାନଙ୍କୁ ଭୁରି ଭୁରି ପ୍ରଶଂସା କରୁଥିଲେ ।



# ଅଜୟ ଯମ ଅଭିମୁଖେ
# 'କ୍ଲାଉଡ'ର ଯାତ୍ରାରମ୍ଭ

ପୂର୍ବ ଇଂଲଣ୍ଡର କେମ୍ବ୍ରିଜ ସହର । ଅନେକ ଐତିହାସିକ କୀର୍ତ୍ତିରାଜିର ମୂକସାକ୍ଷୀ ଭଳି ଦଣ୍ଡାୟମାନ ହୋଇରହିଛି ବ୍ରିଟିଶ ରାଜତନ୍ତ୍ର ଦ୍ୱାରା ପ୍ରତିଷ୍ଠିତ ଅନେକ ଅତ୍ୟୁଚ ସୌଧମାଳା । ଅବଶ୍ୟ କ୍ରମେ ପୁରାତନ କୋଠାବାଡି ଭଙ୍ଗାଯାଇ ତା' ସ୍ଥାନରେ ଗଢ଼ି ଉଠିଲାଣି ଆଧୁନିକ ଜ୍ଞାନକୌଶଳରେ ନିର୍ମିତ ଚାକଚକ୍ୟମୟ ଅନେକ ନଭଶ୍ଚୁମ୍ବୀ ପ୍ରାସାଦ ମାଳା । ଐତିହାସିକ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟ ହେଉଛି ଏହି ସହରର ମୁଖ୍ୟ ଆକର୍ଷଣ ମଧ୍ୟରୁ ଅନ୍ୟତମ । କେମ୍ବ୍ରିଜ ସହରଠାରୁ କିଛି ବାଟ ଗଲାପରେ ସହର ଉପକଣ୍ଠରେ ପଡେ ଲର୍ଡବ୍ରିଜ ସହର । ଏହା ଏକ ଛୋଟ ସହରଭାବେ ପରିଚିତ । ପ୍ରାକୃତିକ ସୌନ୍ଦର୍ଯ୍ୟରେ କୋଳାହଳମୟ ଏହି କ୍ଷୁଦ୍ର ଅଥଚ ଲୋଭନୀୟ ସହର ଦେଇ ଗତି କରିଲାବେଳେ ସମସ୍ତଙ୍କ ଦୃଷ୍ଟି ଯାହାପ୍ରତି ଆକର୍ଷିତ ହୁଏ ତାହା ହେଲା "ଲର୍ଡ ବ୍ରିଜ ରେଡିଓ ଟେଲିସ୍କୋପ" । ଆକାଶକୁ ମୁଣ୍ଡଟେକି ଏକ ବିସ୍ତୀର୍ଣ୍ଣ ଅଞ୍ଚଳରେ



(ମାନ ମନ୍ଦିର)

ବିସ୍ତାରିତ ହୋଇ ରହିଛି ଏହି ବୃହତ୍ ଅତ୍ୟାଧୁନିକ ଟେଲିସ୍କୋପଟି । ଏହି ବୃହତ୍ ଟେଲିସ୍କୋପ ସହ ବିଶ୍ୱର ୬ଟି ବୃହତ୍ ଟେଲିସ୍କୋପକୁ ଯୋଗାଯୋଗ ପଦ୍ଧତିରେ ବାର୍ତ୍ତାବିନିମୟ ଓ ଗ୍ରହଣ ପ୍ରେରଣ କାର୍ଯ୍ୟପାଇଁ ସଂଯୁକ୍ତ କରାଯାଇଛି । ପ୍ରାୟ ଏକଶହ ଟନ ଓଜନ ବିଶିଷ୍ଟ ଏହି ଟେଲିସ୍କୋପର ରହିଛି ୨୦୦ କିଲୋମିଟର ବ୍ୟାପି ପରିସୀମା । ଏହାର ଉଚ୍ଚତା ପ୍ରାୟ ୩୨ ମିଟର । ସମସ୍ତପ୍ରକାର ଅତ୍ୟାଧୁନିକ ବାର୍ତ୍ତାଗ୍ରହଣ କାର୍ଯ୍ୟ ଏଠାରେ କରାଯିବା ସମ୍ଭବ । ଏହି ଟେଲିସ୍କୋପଠାରୁ କିଛି ଦୂରରେ ରହିଛି ଗବେଷଣାଗୃହ । ସାଧାରଣଭାବେ ନିର୍ଜ୍ଜୀବପରି ଦଣ୍ଡାୟମାନ ହୋଇ ରହିଥିବା ଏହି ବୃହତ ଟେଲିସ୍କୋପ ନିକଟକୁ କଦବା କ୍ୱଚିତ କେହି କେହି ଆସିଥାନ୍ତି । ବୈଜ୍ଞାନିକମାନଙ୍କ ବ୍ୟତୀତ ଏଠାରେ ବା ଅନ୍ୟକାହାର କି କାମ ଥାଇପାରେ ?

ମାତ୍ର ଆଜି ଏହି ଟେଲିସ୍କୋପ ନିକଟବର୍ତ୍ତୀ ଅଞ୍ଚଳରେ ପ୍ରବଳ ଗହଳିଚ଼ହଳି । ଶହଶହ ସୁରକ୍ଷାକାରୀ ପୁଲିସ, ଅଭ୍ୟର୍ଥନାକାରୀଙ୍କ ସମାବେଶ । ଦେଶ ବିଦେଶର ଅନେକ ପ୍ରସିଦ୍ଧ ବୈଜ୍ଞାନିକମାନଙ୍କର ଏହିଠାରେ ଆରମ୍ଭ ହେଉଛି ଏକ ଯୁଗାନ୍ତକାରୀ ସମ୍ମିଳନୀ । ପୃଥିବୀର ସବୁଦେଶରୁ ବଛାବଛା ବୈଜ୍ଞାନିକ ଭାଗ ନେଉଛନ୍ତି ଏଥିରେ । ସମ୍ମିଳନୀର ଦ୍ୱାର ଦେଶରେ ବଡ ବଡ ଅକ୍ଷରରେ ଲେଖାଯାଇଛି **''ଯମ ଗ୍ରହ ଆଜିଯାଏ ଅଜୟ''** । ସମ୍ମିଳନୀର ମୁଖ୍ୟ ଲକ୍ଷ ପ୍ଲୁଟୋ ବା ଯମ ଗ୍ରହ ବିଷୟରେ ଆଲୋଚନା । ସୌରଜଗତର ସର୍ବଶେଷ ଗ୍ରହ ଯମ କଣ ସବୁଦିନ ପାଇଁ ପୃଥିବୀବାସୀ ବିଜ୍ଞାନୀମାନଙ୍କ ନିକଟରେ ଅଜୟ ହୋଇ ରହିଯିବ ? ଚ଼ନ୍ଦ୍ରର ମାଟିଗୋଡି ଆସି ପୃଥିବୀ ପୃଷ୍ଠରେ ଗବେଷଣାଗାର ଭିତରେ ସ୍ଥାନ ପାଇସାରିଥିବା ବେଳେ ଓ ଚ଼ନ୍ଦ୍ରପୃଷ୍ଠରେ ଥିବା ବରଫ ବା ଜଳର ଉପସ୍ଥିତିକୁ ଆମେରିକାର କ୍ଲୋମାଣ୍ଡାଇନ୍ ସାମରିକ ମହାକାଶଯାନ ଠାବକରି ସେଠାରେ ବସତି ପ୍ରକ୍ରିୟା ଆରମ୍ଭ ହୋଇ ପାରିଥିବା ବେଳେ, ମଙ୍ଗଳ ପୃଷ୍ଠରୁ ହଜାର ହଜାର ଫଟୋଚ଼ିତ୍ର ସଂଗ୍ରହ କରାଯାଇ ତାହା ପୃଷ୍ଠରେ ଜୀବନର ସତ୍ତାଥିବା ଜଣାପଡିବା ପରେ ସେଠାକୁ ମାନବର ଯାତ୍ରା ଯୋଜନା ଆରମ୍ଭ ହୋଇସାରିଥିବା ବେଳେ, ଗ୍ରହରାଜ ବୃହସ୍ପତିକୁ ପ୍ରଦକ୍ଷଣ କରି ପାଇଓନିୟର ଯାନ ଅନେକ ତଥ୍ୟ ସଂଗ୍ରହ ସହ ଧୂମକେତୁ ସୁମେକର ଲେଭିର ବୃହସ୍ପତି ସହ ସଂଘର୍ଷର ଚ଼ିତ୍ର ଉତ୍ତୋଳନ କରିସାରିଥିବା ବେଳେ, ଇନ୍ଦ୍ର ଓ ବରୁଣ ଗ୍ରହ ଅଭିମୁଖେ ଭୋଏଜର ଯାନ ଯାତ୍ରାକରି ଅନେକ ତଥ୍ୟ ପୃଥିବୀକୁ ପଠାଇ ସାରିଥିବା ବେଳେ ସୌରମଣ୍ଡଳର ଶେଷଗ୍ରହ ଯମ କଣ ମାନବ ନିକଟରେ ସବୁଦିନ

ପାଇଁ ଅଜୟ ହୋଇ ରହିଯିବ ? ଏହା ହିଁ ହେଉଛି ଏଥିରେ ଯୋଗଦେଇଥିବା ବୈଜ୍ଞମାନଙ୍କର ଆଲୋଚନାର ବିଷୟ ।



(ବୈଜ୍ଞାନିକ ଟମ ବର୍ଗ)

ସମ୍ମିଳନୀର ସବୁଠାରୁ ଉଲ୍ଲେଖନୀୟ ବିଷୟଥିଲା ୧୯୩୦ ମସିହାରେ ମାତ୍ର ୩୭ ବର୍ଷ ବୟସରେ ପ୍ଲୁଟୋ ଓ ଯମ ଗ୍ରହକୁ ପ୍ରଥମେ ଆବିଷ୍କାର କରିଥିବା ବର୍ତ୍ତମାନର ୮୬ ବର୍ଷ ବୟସ୍କ ଜ୍ୟୋତିର୍ବିଜ୍ଞାନୀ କ୍ଲାଏଡ ଟମବର୍ଗଙ୍କ ଏହି ସମ୍ମିଳନୀରେ ଯୋଗଦାନ । ତାଙ୍କୁ ସମ୍ମିଳନୀରେ ସମ୍ବର୍ଦ୍ଧନା କରିବାର ସମସ୍ତ ଯୋଜନା ପ୍ରସ୍ତୁତ ହୋଇସାରିଛି ।

ଆଜି ହେଉଛି ସମ୍ମିଳନୀର ଉଦଘାଟନ ଉତ୍ସବ । ଆଲୋକମାଳା ତଥା ପୁଷ୍ପଗୁଚ୍ଛରେ ଝଲସୁଛି ଶୀତତାପ ନିୟନ୍ତ୍ରିତ ସଭାମଣ୍ଡପ । ନିକଟରେ ଅଙ୍କାଯାଇଛି ଯମ ଗ୍ରହର ଏକ ଚିତ୍ର ଓ ସୌରମଣ୍ଡଳ ମଧ୍ୟରେ ତାର ଅବସ୍ଥିତି ପୂର୍ଣ୍ଣ ତଥ୍ୟାବଳୀ । ଏହି ଗ୍ରହ ଏକ ଅନ୍ଧାରୁଆ, ଅତ୍ୟନ୍ତ ଥଣ୍ଡା ତଥା ଆଶ୍ଚର୍ଯ୍ୟଜନକ ଗ୍ରହ ଭାବେ ପୃଥିବୀବାସୀଙ୍କ ନିକଟରେ ପରିଚିତ । ଶାସ୍ତ୍ର ପୁରାଣ ଅନୁସାରେ ଅନେକ ଧର୍ମ ଶାସ୍ତ୍ରରେ ଏହା ପ୍ରେତାତ୍ମାଙ୍କ ଅବସ୍ଥାନ ରୂପେ ଅଭିହିତ । ଏହି ଗ୍ରହର ବିଶେଷତ୍ୱ ହେଉଛି ଯେ ଏହା ୨୪୮ ବର୍ଷରେ ଥରେ ସୂର୍ଯ୍ୟ ଚାରିପଟେ ଏକ ଅଣ୍ଡାକୃତି ପଥରେ ବୁଲିଆସିଥାଏ । ସୂର୍ଯ୍ୟଠାରୁ ଏହି ଗ୍ରହର ଦୂରତା ପ୍ରାୟ ୬୯୬ କୋଟି କିଲୋମିଟର । ସୂର୍ଯ୍ୟଠାରୁ ସର୍ବାଧିକ ଦୂରରେ ରହିଥିବାରୁ ଏହା ପୃଷ୍ଠ ସବୁବେଳେ ବରଫ ଦ୍ୱାରା ଆଚ୍ଛାଦିତ ହୋଇ ରହିଥାଏ । ଏହାକୁ ସେଇଥିପାଇଁ ଏକ ଧୂମକେତୁ ସହ ତୁଳନା କରାଯାଇଥାଏ । ସୂର୍ଯ୍ୟର ନିକଟବର୍ତ୍ତୀ ହେଲେ ଧୂମକେତୁର ଯେପରି ପରିବର୍ତ୍ତନ ଘଟି ବୃହତ୍ତ ଲାଞ୍ଜ ସୃଷ୍ଟି ହୋଇଥାଏ । ଏହି ଗ୍ରହ ସୂର୍ଯ୍ୟର ନିକଟବର୍ତ୍ତୀ ହେବାବେଳେ ଏହାର ଆଲୋକ ଓ ଉତ୍ତାପ ଦ୍ୱାରା ଆକର୍ଷିତ ହୋଇ ଏଥିରେ ସେହି ସମୟରେ ଅନେକ ନୂତନତ୍ୱ ପ୍ରକାଶପାଏ ।

ପ୍ଲୁଟୋ ଗ୍ରହ ଉପରେ କାର୍ଯ୍ୟକ୍ରମ ସଞ୍ଚାଳନ କରୁଥିବା ଆମେରିକାର 'ନାସା' ଗବେଷଣା କେନ୍ଦ୍ରର ବରିଷ୍ଠ ବୈଜ୍ଞାନିକ ରବର୍ଟ ଷ୍ଟୋହେଲ ଟମବର୍ଗଙ୍କୁ ପାଛୋଟି ନେଉଥିଲେ ସଭାମଣ୍ଡପକୁ । ୮୬ ବର୍ଷ ବୟସ୍କ ଟମବର୍ଗଙ୍କୁ ଅଭିନନ୍ଦନ ଜଣାଇବାକୁ ଠିଆହୋଇ ରହିଥିଲେ ସଭାସ୍ଥଳର ସମସ୍ତ ବୈଜ୍ଞାନିକ । ତାଙ୍କୁ ସମ୍ବର୍ଦ୍ଧନା ଜଣା ଯାଉଥିଲା ପୃଥିବୀବାସୀଙ୍କ ତରଫରୁ । ସେ ସମ୍ବର୍ଦ୍ଧନାର ଉତ୍ତର ଦେଇ ପ୍ଲୁଟୋ ଗ୍ରହ ଯାତ୍ରାପାଇଁ ତୁରନ୍ତ ଯୋଜନା ଆରମ୍ଭ କରିବାକୁ ପରାମର୍ଶ ଦେଇଥିଲେ ସମସ୍ତ ବରିଷ୍ଠ ବୈଜ୍ଞାନିକମାନଙ୍କୁ । ପ୍ଲୁଟୋ ବିଜ୍ଞାନୀ ମାନବ ନିକଟରେ ସବୁଦିନପାଇଁ ଅପରାଜେୟ ହୋଇ ନରହୁ ଏହା ହିଁ ଥିଲା ତାଙ୍କର ମୁଖ୍ୟ ବାର୍ତ୍ତା । ସେହି ଅନୁସାରେ ଆରମ୍ଭ ହେଲା ''ତୁରନ୍ତ ପ୍ଲୁଟୋ ଯାତ୍ରା'' ଯୋଜନା । ପ୍ଲୁଟୋର ନିଜସ୍ୱ 'ଚାରନ' ନାମକ ଗୋଟିଏ ଉପଗ୍ରହ ଥିବାରୁ ଏହି ଯାତ୍ରା ଯୋଜନାରେ ଯାଉଥିବା ମହାକାଶଯାନ ଉଭୟ ଗ୍ରହ ଓ ତାର ଉପଗ୍ରହ ସହ ନିକଟବର୍ତ୍ତୀ ଅଞ୍ଚଳରୁ ଅନେକ ତଥ୍ୟ ଯେ ସଂଗ୍ରହ କରିପାରିବ ଏ ବିଷୟରେ ସମସ୍ତ ବୈଜ୍ଞାନିକ ଆଲୋଚନା କରୁଥିଲେ ।

ଏହି ସମାବେଶରେ ନିମନ୍ତ୍ରିତ ହୋଇ ଯୋଗଦେଇଥିଲେ ବୈଜ୍ଞାନିକ ଡେଭିଡ୍, ରୋଜାଲିନା, ଜ୍ୟାକ୍ସନ ପ୍ରମୁଖ । ସେମାନେ ମଧ୍ୟ ମହାକାଶବିଜ୍ଞାନର ବରିଷ୍ଠ ବୈଜ୍ଞାନିକ । ପ୍ଲୁଟୋ ଅଭିମୁଖେ ଯାତ୍ରାକରୁଥିବା ହାଲୁକା ମହାକାଶଯାନର ନିର୍ମାଣ ନକ୍ସା ସେହିଠାରେ ହିଁ ପ୍ରସ୍ତୁତ କରାଗଲା । ବେଳେ ବେଳେ ଏହି ଗ୍ରହ ପୃଷ୍ଠରେ ଉତ୍ତାପ ବିଯୁକ୍ତ ୩୬୦ ଡ଼ିଗ୍ରୀକୁ କମିଯାଉଥିବାରୁ ଯାତ୍ରାକରୁଥିବା ମହାକାଶଯାନର ଯନ୍ତ୍ରପାତିକୁ ସେହି ଅନୁସାରେ ନିୟନ୍ତ୍ରିତ କରାଯିବାର ବ୍ୟବସ୍ଥା ମଧ୍ୟ କରାଯାଇଥିଲା । ପ୍ଲୁଟୋ ଗ୍ରହକୁ ଯାଉଥିବା ମାନବବିହୀନ ମହାକାଶ ଯାନରେ ଅତ୍ୟାଧୁନିକ କ୍ୟାମେରା, ସ୍ପେକ୍ଟ୍ରୋମିଟର, ରେଡ଼ିଓ, ଟ୍ରାନ୍ସମିଟର ଖଞ୍ଜାଯାଇ ଏହାକୁ ପୃଥିବୀରୁ ମହାକାଶକୁ ବୋହି ନେବାପାଇଁ ସେଣ୍ଟାଉର ରକେଟକୁ ବ୍ୟବହାର କରିବାକୁ ନିଷ୍ପତ୍ତି ଗ୍ରହଣ କରାଗଲା ।

ପୂର୍ବରୁ ଏଭଳି ଯୋଜନାର ରୂପରେଖ ପ୍ରାୟ ପ୍ରସ୍ତୁତି ହୋଇ ସାରିଥିବାରୁ ତୁରନ୍ତ ଯମ ଅଭିମୁଖେ ଯାତ୍ରାକରୁଥିବା ମହାକାଶ ଯାନ 'କ୍ଲାଉଡ଼୍'କୁ ଉତକ୍ଷେପଣ କରାଗଲା । ଏହି ମହାକାଶ ଯାନର ଗତିବିଧି ଲକ୍ଷକରିବାକୁ ପୃଥିବୀର ଯେଉଁ କେତେକ ବୃହଦ୍ ଦୂରବୀକ୍ଷଣ ଯନ୍ତ୍ରକୁ ଦାୟିତ୍ୱ ଦିଆଗଲା ସେଥି ମଧ୍ୟରୁ ପ୍ରମୁଖ ଭାବେ ରହିଥିଲା ସେନିଗାଲର ଡେଭିଡ୍‌ଙ୍କ ଦ୍ୱାରା ସଞ୍ଚାଳିତ କିଙ୍ଗଷ୍ଟୋନ ଟେଲିସ୍କୋପ, ଲର୍ଡ ବ୍ରିଜ ଟେଲିସ୍କୋପ, ଆମେରିକାର ଅନେକ ଟେଲିସ୍କୋପ ପ୍ରମୁଖ । ୟୁରୋପିଆନ ସ୍ପେସ ଏଜେନ୍ସି ଦ୍ୱାରା ଏହି ମହାକାଶ ଯାନକୁ ମହାକାଶକୁ ଉତ୍‌କ୍ଷେପଣ କରାଗଲା । ସେଥିପାଇଁ ଏଠାରେ ଡେଭିଡ୍ ଓ ରୋଜଲିନା ପ୍ରମୁଖଙ୍କୁ କିଛିଦିନ କଟାଇବକୁ ହେଲା । ସମସ୍ତ କାର୍ଯ୍ୟକ୍ରମ ସୁରୁଖୁରରେ ଚାଲୁଥିଲା । 'କ୍ଲାଉଡ଼୍' ମହାକାଶ ଯାନ ଚ଼ନ୍ଦ୍ରମାକୁ ପଛରେ ପକାଇ ସୌରଜଗତର ମଙ୍ଗଳ ଗ୍ରହ ଗତିପଥ ଅତିକ୍ରମ କରିବାକୁ ପ୍ରଚ଼ଣ୍ଡ ବେଗରେ ଗତିକରି ଚାଲିଥିଲା । ଡେଭିଡ୍ ଓ ରୋଜାଲିନାଙ୍କୁ ସେନିଗାଲ ଫେରିବାକୁ ହିଁ ହେବ । କାରଣ ଆଉ କିଛି ଦିନପରେ ଏହି ମହାକାଶ ଯାନ ପଠାଉଥିବା ସମସ୍ତ ତଥ୍ୟକୁ ତାଙ୍କୁ କିଙ୍ଗଷ୍ଟୋନ ମାନମନ୍ଦିର ମାଧ୍ୟମରେ ସଂଗ୍ରହ କରି ବିଶ୍ଳେଷଣ କରିବାକୁ ହେବ । ଯଦିଓ ଯମ ଗ୍ରହ ନିକଟରେ ପହଞ୍ଚିବାର ଅଳ୍ପ କେତେମାସ ପୂର୍ବରୁ ଏହି ମହାକାଶ ଯାନର ସବୁଠାରୁ ଶକ୍ତିଶାଳୀ କ୍ୟାମେରା କାର୍ଯ୍ୟକ୍ଷମ ହେବ ତଥାପି ଏଥିରେ କାର୍ଯ୍ୟକ୍ଷମ ଥିବା ଅନେକ କ୍ୟାମେରାରୁ ଅହରହ ମିଳୁଥିବା ବିଶ୍ୱବ୍ରହ୍ମାଣ୍ଡ ଓ

ସୌରଜଗତ ବିଷୟରେ ଅନେକ ଅଜଣା ତଥ୍ୟ ଯେ କେତେ ଉପଯୋଗୀ ତାହା ବୁଝିଥିଲେ ରୋଜାଲିନା, ଡେଭିଡ୍ ପ୍ରମୁଖ । ହଁ, ଆସନ୍ତା କାଲି ହିଁ ସେମାନଙ୍କୁ ସେନିଗାଲ ଫେରିଯିବାକୁ ହେବ । ରୋଜି ଜିନିଷପତ୍ର ସଂଗ୍ରହରେ ବ୍ୟସ୍ତ ଥିଲେ । ଜିନିଷ ବୋଇଲେ ଅନେକ ଗବେଷଣା ପୁସ୍ତକ, ଯନ୍ତ୍ରପାତି ଓ ଗବେଷଣା ସାମଗ୍ରୀ । ଏହା ବ୍ୟତୀତ ଜଣେ ବରିଷ୍ଠ ବୈଜ୍ଞାନିକଙ୍କ ନିକଟରେ ଆଉ କଣ ବା ଥାଆନ୍ତା ।

ସକାଳୁ ଡେଭିଡ୍ ପ୍ରସ୍ତୁତ ହୋଇସାରିଥିଲେ । ଯମ ଅଭିମୁଖେ ଯାତ୍ରା କାର୍ଯ୍ୟକ୍ରମର ମୁଖ୍ୟ ସଂଚାଳକ ରବର୍ଟ ଷ୍ଟୋହେଲ ପ୍ରମୁଖ ଡେଭିଡ୍ ଦମ୍ପତିଙ୍କୁ ବିଦାୟ ଦେବାକୁ ଆସି ଉପସ୍ଥିତ ଥିଲେ ବିଶ୍ରାମ କକ୍ଷ ନିକଟରେ । ପୃଥିବୀର ସମସ୍ତ ବୈଜ୍ଞାନିକଙ୍କ ସହଯୋଗ ଦ୍ୱାରା ହିଁ ଏହିଭଳି ଏକ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ସଂଗ୍ରହକାରୀ ମହାକାଶ ଯାତ୍ରା କାର୍ଯ୍ୟକ୍ରମ ସଫଳ ହୋଇପାରିବ । ରବର୍ଟ ଡେଭିଡ୍‌ଙ୍କଠାରୁ ଅନେକ ବର୍ଷ ସାନ, କିନ୍ତୁ ସେ ବି ଜଣେ ବିଚକ୍ଷଣ ଜ୍ୟୋତିର୍ବିଜ୍ଞାନୀ । ତାଙ୍କରି ନକ୍ସା ଦ୍ୱାରା ପ୍ରସ୍ତୁତ ହୋଇ ଯମ ଅଭିମୁଖେ ଯାତ୍ରା କରିଥିବା ମହାକାଶ ଯାନ ଠିକ୍ ଭାବେ କାର୍ଯ୍ୟକରି ଗନ୍ତବ୍ୟ ପଥରେ ଆଗେଇ ଚାଲିଥିବାରୁ ଡେଭିଡ୍ ତାଙ୍କୁ ଧନ୍ୟବାଦ ଜଣାଉଥିଲେ । ହାତ ହଲାଇ ବିଦାୟ ନେଇ କାରରେ ବସୁଥିଲେ ଡେଭିଡ୍ ଓ ପତ୍ନୀ ରୋଜାଲିନା । ଏଠାରୁ ଏୟାରପୋର୍ଟ ଅଧଘଣ୍ଟାର ବାଟ ଓ ସେଠାରୁ ବିମାନରେ ସେନିଗାଲ ବିମାନ ବନ୍ଦରରେ ପହଞ୍ଚିବାପାଇଁ ୭ ଘଣ୍ଟା ସମୟ ଲାଗିବ । ଭୂମଧ୍ୟସାଗର ଓ ସାହାରା ମରୁଭୂମି ଦେଇ ସେମାନଙ୍କୁ ଯାତ୍ରା କରିବାକୁ ହେବ ।



# ଅଜଣା ତଥ୍ୟ ଓ ଓର୍ଟ ମେଘମାଳା

ଇତିମଧ୍ୟରେ ବିତିଗଲାଣି କେତେବର୍ଷ । ଗ୍ରହରାଜ ବୃହସ୍ପତିଙ୍କୁ ଟପି ପ୍ରଚଣ୍ଡ ବେଗରେ ଗତିକରି ଚାଲିଥିଲା ମହାକାଶ ଯାନ କ୍ଲାଉଡ଼ । ଏହାପରେ ଶନି ଗ୍ରହ, ପରେ ପରେ ଇନ୍ଦ୍ର ଓ ବରୁଣ ଏବଂ ଶେଷରେ ଯମ ଗ୍ରହ । ବରୁଣକୁ ଅତିକ୍ରମ କରିବାର ପରେ ପରେ କ୍ଲାଉଡ଼ର ସ୍ୱତନ୍ତ୍ର କ୍ୟାମେରା କାର୍ଯ୍ୟକ୍ଷମ ହେବ । ପୃଥିବୀର ୬ଟି ବୃହତ୍ ଟେଲିସ୍କୋପ ତଥା ଲର୍ଡ ବ୍ରିଜ ରେଡ଼ିଓ ଟେଲିସ୍କୋପର ମୂଳକେନ୍ଦ୍ର ଏହି ମହାକାଶ ଯାନର ଗତିବିଧି ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିଥିଲା । ସୌରମଣ୍ଡଳ ମଧ୍ୟରେ ଗତିକରି ଯିବା ସମୟରେ କ୍ଲାଉଡ଼ ଅନେକ ଅଜଣା ତଥ୍ୟ ପଠାଇ ସାରିଲାଣି ପୃଥିବୀ ପୃଷ୍ଠକୁ । ସେନିଗଲ୍‌ର କିଙ୍ଗଷ୍ଟୋନ ମାନମନ୍ଦିରରେ କ୍ଲାଉଡ଼ର ଗତିବିଧି ଲକ୍ଷ କରୁଥିଲେ ବସି ରହି ଡେଭିଡ୍‌ଙ୍କ ସହକାରୀ ଜ୍ୟାକ୍‌ସନ । ଏହି ଯାନରେ ସଂଯୁକ୍ତ ହୋଇଥିବା ଶକ୍ତିଶାଳୀ ଆଣ୍ଟେନାରୁ ପ୍ରେରିତ ହେଉଥିବା ତଥ୍ୟ ସଂଗ୍ରହରେ ବ୍ୟସ୍ତ ରହିଥିଲେ ସେ । ଏଥିରୁ ଜଣାପଡିଲାଣି ଶନିଗ୍ରହର ବଳୟ ବିଷୟରେ କେତେକ ନୂତନ ତଥ୍ୟ । କ୍ଲାଉଡ଼ ନିକଟତର ହେଲାଣି ସୌରଜଗତର ୪ର୍ଥ ବୃହତ୍ ଗ୍ରହ ବରୁଣ ନିକଟରେ । ଏହି ଗ୍ରହଦେଇ ଯିବାବେଳେ ଏହା ପୃଷ୍ଠରେ ଥିବା ମିଥେନ ଗ୍ୟାସର ଉପସ୍ଥିତି ଯୋଗୁ ଏହାର ସବୁଜ ରଙ୍ଗ ଦୃଶ୍ୟପଟ ଦେଖି ପୃଥିବୀ ପୃଷ୍ଠର ବୈଜ୍ଞାନିକମାନେ ଆହ୍ଲାଦିତ ହେଉଥିଲେ । କିନ୍ତୁ ବରୁଣ ବିଷୟରେ ପୃଥିବୀବାସୀଙ୍କର ଜ୍ଞାନ ତଥାପି ସୀମିତ ରହିଥିଲା । କ୍ଲାଉଡ଼ର ଲକ୍ଷ ହେଉଛି ଯମ ଗ୍ରହ, ବରୁଣ ନୁହେଁ । ତେଣୁ ବରୁଣ ଗ୍ରହ ବିଷୟରେ ଯେତିକି ତଥ୍ୟ କ୍ଲାଉଡରୁ ମିଳୁଥିଲା ସେଇଥିରେ ହିଁ ସନ୍ତୁଷ୍ଟ ରହିଥିଲେ ବୈଜ୍ଞାନିକଗଣ ।

ହ୍ୟାଲୋ, ଜ୍ୟାକସନ ''ହାଭ ୟୁ ଗଟ ସମ ନ୍ୟୁ ଇନଫରମେସନ'' ଡେଭିଡ୍‌ଙ୍କ ପ୍ରଶ୍ନରେ ଜ୍ୟାକ୍‌ସନ ଟେଲିସ୍କୋପର ଆଇପିସରୁ ଆଖି ଉଠାଇ ଅଭିବାଦନ କରୁଥିଲେ ଡେଭିଡ୍‌ଙ୍କୁ । କ୍ଲାଉଡ଼ରୁ ମିଳିଥିବା ସମସ୍ତ ତଥ୍ୟର ବିଶ୍ଳେଷଣାତ୍ମକ ରିପୋର୍ଟକୁ ତନ୍ନତନ୍ନ କରି ପରୀକ୍ଷା କରିଚାଲିଥିଲେ ଡେଭିଡ୍ । ସେ ବରୁଣ ଗ୍ରହରୁ ମିଳିଥିବା ଫଟୋଚିତ୍ର

ଦେଖି ଅଧିକ ଭାବେ ଆନନ୍ଦିତ ହୋଇପଡିଥିଲେ । ଜ୍ୟାକ୍ସନଙ୍କୁ ନିର୍ଦ୍ଦେଶଦେଇ ସେ କହୁଥିଲେ ଦେଖ ଯମଠାରୁ କେତେ ଦୂରରେ ଅଛି କ୍ଲାଉଡ଼ । ମୋ ହିସାବରେ ଖୁବ୍ ଶୀଘ୍ର ଏହାର ଶକ୍ତିଶାଳୀ କ୍ୟାମେରା କାର୍ଯ୍ୟକ୍ଷମ ହେବ ଏବଂ ଏହାପରେ ଅନେକ ନୂତନ ତଥ୍ୟ ଆମ ଆଗରେ ଉଦ୍‌ଭାସିତ ହୋଇପାରିବ । ସେଥିପାଇଁ ଆମକୁ ପ୍ରସ୍ତୁତ ହୋଇଯିବାକୁ ହେବ, କାରଣ ଏହାର ସ୍ୱତନ୍ତ୍ର କ୍ୟାମେରା କାର୍ଯ୍ୟକାରୀ ହେବା ପରଠାରୁ ଦିନ ରାତ୍ରି କିଙ୍ଗଷ୍ଟୋନ ମାନମନ୍ଦିର ଓ ପୃଥିବୀର ଅନ୍ୟ ୬ଟି ବୃହଦ୍ ମାନମନ୍ଦିର ଖୋଲାରହି ତଥ୍ୟ ଗ୍ରହଣ କାର୍ଯ୍ୟରେ ଲାଗିରହିବ । ଡେଭିଡ୍ ହିଁ ଏହି କାର୍ଯ୍ୟକ୍ରମର ନେତୃତ୍ୱ ନେବେ ।

ବହୁ ପ୍ରତୀକ୍ଷିତ ସମୟ ଆସିଗଲା । କ୍ଲାଉଡର ସ୍ୱତନ୍ତ୍ର କ୍ୟାମେରା ଯମ ଗ୍ରହ ତଥା ନିକଟବର୍ତ୍ତୀ ଅଞ୍ଚଳର ତଥ୍ୟ ସଂଗ୍ରହ କରିବାକୁ କାର୍ଯ୍ୟକ୍ଷମ ହେଲାଣି । ଡେଭିଡ୍ କିନ୍ତୁ ବିଶେଷଭାବେ ଆଗ୍ରହୀ ଥିଲେ ଯମ ଗ୍ରହପରେ ଦୂର ମହାକାଶରେ ଥିବା ଓର୍ଟ ମେଘମାଳା ହି ଧୂମକେତୁ ମାନଙ୍କର ଉତ୍ପତ୍ତି ସ୍ଥଳ ବିଷୟରେ ଅଧିକ ତଥ୍ୟ ଜାଣିବାକୁ । ନିଷ୍କ୍ରିୟ ଅବସ୍ଥାରେ ଏହି ଅଞ୍ଚଳରେ ରହିଥିବା ଶହ ଶହ ଧୂମକେତୁ ଯଦି କୌଣସି ପ୍ରକାର ଆକର୍ଷଣ ଦ୍ୱାରା ଆକ୍ରାନ୍ତ ହୁଅନ୍ତି ତେବେ ସେମାନେ ଖୀପ୍ର ବେଗରେ ସୌରଜଗତ ଆଡେ ଧାବମାନ ହୋଇଥାନ୍ତି । ଓର୍ଟ ମେଘମାଳା ଅଞ୍ଚଳକୁ ଅନେକ ବୈଜ୍ଞାନିକ ସୌରଜଗତର ଏକ ଅଂଶବିଶେଷ ବୋଲି ସେଇଥିପାଇଁ ମତ ଦେଇଥାନ୍ତି । ଧୂମକେତୁ ହିଁ ବରଫବୃତ୍ତ ଗ୍ୟାସ ଓ ଧୂଳିକଣାର ସମାରୋହରେ ଗଠିତ ହୋଇଛି । କ୍ଲାଉଡ଼ ଓର୍ଟ ମେଘମାଳାଠାରୁ ବହୁ ଦୂରରେ ରହିଥିଲା । କିନ୍ତୁ ଯମ ଗ୍ରହରୁ ତଥ୍ୟ ସଂଗ୍ରହପରେ ଓର୍ଟ ମେଘମାଳା ଆଡେ ଗତିକରି କ୍ଲାଉଡ଼ ଅନନ୍ତ ମହାକାଶରେ ନିଚିହ୍ନ ହୋଇଯିବାବେଳେ ଯଦି ଦୈବାତ୍ କୌଣସି ନୂତନ ତଥ୍ୟ ସେହି ଅଞ୍ଚଳ ବିଷୟରେ ଜଣାଇପାରେ ତେବେ ତାହା ବୈଜ୍ଞାନିକମାନଙ୍କ ପାଇଁ ଆଣିଦେବ ଅନେକ ନୂତନ ତଥ୍ୟ ଏହା ହିଁ ମନ ଭିତରେ ଚିନ୍ତାକରୁଥିଲେ ଡେଭିଡ୍ ।

ହଠାତ୍ ଜ୍ୟାକସନ୍‌ଙ୍କ ଚିତ୍କାର ଶୁଭିଲା । ସାର, କଣ ? ଯମ ଗ୍ରହର ନିକଟବର୍ତ୍ତୀ ହେଉଥିବା କ୍ଲାଉଡ଼ଠାରୁ ଯେଉଁ ତଥ୍ୟ ମିଳୁଛି ସେଥିରେ ମହାକାଶରେ ଏକ ଅଧିକ ସ୍ପଷ୍ଟ ଜ୍ୱଳନ୍ତ ବସ୍ତୁର ଆବିର୍ଭାବ ଉଦ୍‌ଭାସିତ ହେଲାଣି । ସ୍ଥିର ଆଲୋକ ପ୍ରଦାନକାରୀ ଏହି ବସ୍ତୁ ତେବେ କ'ଣ ? ଏହା ତ ନକ୍ଷତ୍ର ନୁହେଁ, ଉଲକାପିଣ୍ଡ ହେବାର ପ୍ରଶ୍ନ

ଉଠୁନାହିଁ, ଯମର ଉପଗ୍ରହ ବି ନୁହେଁ, ତେବେ କଣ ଏହି ଜ୍ୱଳନ୍ତ ମହାକାଶପିଣ୍ଡ ? ଡେଭିଡ୍ ଜ୍ୟାକ୍‌ସନଙ୍କ ଏ ପ୍ରକାର କଥାରେ ହଠାତ୍ ବିସ୍ମୟାଭିଭୂତ ହୋଇ ଆଗେଇଗଲେ ବିଶ୍ଳେଷଣ କକ୍ଷ ମଧ୍ୟକୁ । ହଁ, ସତେ ତ ! କ୍ଲାଉଡ଼ରୁ ମିଳୁଥିବା ଫଟୋଚିତ୍ରରୁ ଯମ ଗ୍ରହ ଠାରୁ କିଛି ଦୂରବର୍ତ୍ତୀ ସ୍ଥାନରେ ଏକ ଅପେକ୍ଷାକୃତ ଉଜ୍ଜ୍ୱଳ ବସ୍ତୁର ଉପସ୍ଥିତି ଅତ୍ୟନ୍ତ ସ୍ପଷ୍ଟଭାବେ ଲକ୍ଷ କରାଯାଉଛି । ତେବେ କଣ ଏହି ସ୍ପଷ୍ଟ ଆଲୋକ ? ଏହା କଣ ସୌର ଜଗତରେ ଥିବା ଓ ଆଜିଯାଏ ଅନାବିଷ୍କୃତ ହୋଇଥିବା ଅନ୍ୟ ଏକ ଗ୍ରହ ନାଁ ଆଉ କିଛି ?



# ସୌରମଣ୍ଡଳରେ ଦଶମ ଗ୍ରହ

କ୍ରିଂ, କ୍ରିଂ, କ୍ରିଂ..... ସେନିଗାଲ କିଙ୍ଗଷ୍ଟୋନ ମାନମନ୍ଦିରର ମୁଖ୍ୟ ଅଭ୍ୟର୍ଥନାକାରୀଙ୍କ ଟେଲିଫୋନ ବାଜି ଉଠିଲା ରାତ୍ରିର ନିସ୍ତବ୍ଧତାକୁ ଚହଲାଇଦେଇ । ରାତ୍ରି ୧୨ଟା ବାଜିଲାଣି । ନଭେମ୍ବର ମାସର ଶୀତ ରାତ୍ରିର ନିସ୍ତବ୍ଧତା ମଧ୍ୟରେ ମଧ୍ୟ ସଞ୍ଚାଳିତ ରହିଥିଲା ଏହି ମାନମନ୍ଦିରର ସମସ୍ତ ବିଭାଗ । ଅପରପାର୍ଶ୍ୱରୁ ଭାସି ଉଠୁଥିଲା ଲର୍ଡ ବ୍ରିଜ ରେଡ଼ିଓ ଟେଲିସ୍କୋପ କେନ୍ଦ୍ରରୁ ଆସୁଥିବା ବେତାର ବାର୍ତ୍ତା । ହ୍ୟାଲୋ ! ଡେଭିଡଙ୍କୁ ଟେଲିଫୋନ ଦିଅନ୍ତୁ । ଅପରପାର୍ଶ୍ୱରେ ବୈଜ୍ଞାନିକ ଷ୍ଟୋହେଲଙ୍କ କଣ୍ଠସ୍ୱର । ନିଜର ଗବେଷଣା ପ୍ରକୋଷ୍ଠକୁ ଟେଲିଫୋନ ତତ୍‌କ୍ଷଣାତ ସଂଯୋଗ କରିଦିଆଗଲା । ପରବର୍ତ୍ତୀ କ୍ଷଣରେ ଡେଭିଡ୍ ରିସିଭର ଉଠାଇଲେ । ହ୍ୟାଲୋ ! ରବର୍ଟ - କଣ ହେଲା ! ''ସାର, ଆପଣମାନେ ବୋଧହୁଏ ଏହି ତଥ୍ୟ ପାଇସାରିଥିବେ । କ୍ଲାଉଡ଼ରୁ ଆମକୁ ଯେଉଁ ସଙ୍କେତ ମିଳୁଛି ସେ ବିଷୟରେ ମୁଁ ଆପଣଙ୍କର ପରାମର୍ଶ ଲୋଡୁଛି ସାର ।'' କହୁଥିଲେ ରବର୍ଟ । ହଁ ଆମ ସମସ୍ତ ପୃଥିବୀବାସୀ ବୈଜ୍ଞାନିକମାନଙ୍କ ପାଇଁ ଏହ ତଥ୍ୟ ଏକ ଆହ୍ୱାନର ପ୍ରଶ୍ନବାଚୀ ସୃଷ୍ଟିକରିଛି । କ୍ଲାଉଡ଼ ପଠାଇଥିବା ତଥ୍ୟରୁ ଜଣାପଡୁଛି ଯେ ସୌରଜଗତ ନିକଟରେ ଅନ୍ୟ ଏକ ନୈସର୍ଗିକ ପଦାର୍ଥ ଉପସ୍ଥିତ ରହିଛି ବୋଲି । ଡେଭିଡ୍ କହୁଥିଲେ ଏହି ନୈଶର୍ଗିକ ପଦାର୍ଥ କ'ଣ ହୋଇପାରେ ! ଏହା କଣ ସୌରମଣ୍ଡଳର ଦଶମ ଗ୍ରହ ? ତୁମେ ଗବେଷଣା ଚାଲୁରଖ ରବର୍ଟ । ଖୁବଶୀଘ୍ର ଆମେ ସମ୍ମିଳିତ ହୋଇ ମିଳୁଥିବା ତଥ୍ୟକୁ ବିଶ୍ଳେଷଣ କରିବା ଓ ଏହି ନୂତନ ସୌରପିଣ୍ଡ ବିଷୟରେ ସଠିକ ତଥ୍ୟ ବିଶ୍ୱବାସୀଙ୍କୁ ଜଣାଇବାରେ ସକ୍ଷମ ହୋଇପାରିବା । ଏତିକି କହି ଟେଲିଫୋନ ଥୋଇଲେ ଡେଭିଡ଼ । ତାଙ୍କ ଆଗରେ ଆଜି ଆଉ ଏକ ନୂତନ ତଥ୍ୟ ଉଦ୍‌ଭାସିତ । କଣ ହୋଇପାରେ ଏହି ସୌରପିଣ୍ଡ ଯାହାକି ହଠାତ୍ ଆବିର୍ଭୁତ ହୋଇଛି । ଏହା ଏବେ ଯମ ଗ୍ରହରୁ ଲକ୍ଷଲକ୍ଷ ମାଇଲ ଦୂରରେ ରହିଛି । ଦୂରବୀକ୍ଷଣ ଯନ୍ତ୍ରକୁ ଏହି ନୂତନ ପିଣ୍ଡ ଆଡେ ମୁହାଁଇ ରଖିବାକୁ ନିର୍ଦ୍ଦେଶଦେଲେ ଡେଭିଡ୍ । ହଁ କ୍ଲାଉଡ଼ କ୍ରମେ ଯମ ଗ୍ରହର ନିକଟବର୍ତ୍ତୀ ହେବାରେ ଲାଗିଛି ମାତ୍ର ଏ କଣ ? ସୂର୍ଯ୍ୟ ପରିକ୍ରମା କରୁଥିବା

ଯମ ଗ୍ରହର କକ୍ଷପଥରେ ଯେ କ୍ରମେ ବ୍ୟତିକ୍ରମ ପରିଲକ୍ଷିତ ହେଉଛି ଏହାର କାରଣ କଣ ହୋଇପାରେ ? ନିଶ୍ଚଳଭାବେ ଗବେଷଣାରେ ଲାଗିଥିଲେ ଡେଭିଡ୍ । ଲର୍ଡ ବ୍ରିଜ ମାନମନ୍ଦିର ସହ ସଂଯୁକ୍ତ କରାଯାଇଥିବା କମ୍ପ୍ୟୁଟରର ସୁଇଚ୍ ଟିପିଲେ ଡେଭିଡ୍ । ଏହି ସଂଯୋଗ ପ୍ରକ୍ରିୟା ଦ୍ୱାରା ଉଭୟ କେନ୍ଦ୍ର ତଥା ପୃଥିବୀର ଅନ୍ୟାନ୍ୟ କେନ୍ଦ୍ରର ବୈଜ୍ଞାନିକମାନେ 'କ୍ଲାଉଡ୍'ର ଗତିପଥ ବିଷୟରେ ଯେଉଁସବୁ ତଥ୍ୟ ସଂଗ୍ରହ କରନ୍ତି ତାହାସବୁ କେନ୍ଦ୍ରକୁ ଯୋଗାଇ ଦିଆଯିବାର ବ୍ୟବସ୍ଥା ରହିଛି । ଡେଭିଡ୍ ସୁଇଚ୍ ଅନ କରିବାମାତ୍ରେ ସେଠାକାର ତଥ୍ୟକେନ୍ଦ୍ର ମଧ୍ୟ ଯମ ଗ୍ରହର ଗତିପଥରେ ହଠାତ୍ ଅସ୍ଥିରତା ଲକ୍ଷ କରିଥିବାର ସୂତ୍ର ପ୍ରକାଶ କଲା । ଏହା ହିଁ ତାଙ୍କ ପାଇଁ ଆଣି ଦେଲା ଏକ ନୂତନ ସମସ୍ୟା । ନିକଟବର୍ତ୍ତୀ କୌଣସି ଏକ ସୌରପିଣ୍ଡର ଆକର୍ଷଣ ଯୋଗୁ ଯମର ଗତିପଥରେ ଏ ପ୍ରକାର ପରିବର୍ତ୍ତନ ଘଟୁଛି ବୋଲି ନିଃସନ୍ଦେହ ଥିଲେ ଡେଭିଡ୍ । କମ୍ପ୍ୟୁଟର ଦ୍ୱାରା ଏହାର ବିଶ୍ଳେଷଣ ପ୍ରକ୍ରିୟା ତାଙ୍କ ଦ୍ୱାରା ଆରମ୍ଭ ହୋଇ ସାରିଥିଲା । ସେ ଅତ୍ୟନ୍ତ କୌତୁହଳୀ ହୋଇ ଉଠିଥିଲେ । ଆମେ ତେବେ ସୌର ମଣ୍ଡଳରେ ଖୁବଶୀଘ୍ର ଏକ ନୂତନ ଆଗନ୍ତୁକଙ୍କୁ ସାମିଲ କରିପାରିବୁ । ଆମର ଗ୍ରହ ସଂଖ୍ୟା ୯ ନୁହେଁ ୧୦' ଏହା ପୃଥିବୀ ବାସୀଙ୍କୁ ଜଣାଇବାଭଳି ଗୌରବାବହ ଘଟଣା କଣ ଅଛି !

ଡେଭିଡ୍ ନିର୍ଦ୍ଦେଶଦେଲେ ଯମ ଗ୍ରହର ଗତିପଥକୁ ନିର୍ଦ୍ଦିଷ୍ଟଭାବେ ନିରୀକ୍ଷଣ କରିବାକୁ । ସେହି କାର୍ଯ୍ୟ ଆରମ୍ଭ ହେଲା । ସନ୍ଧ୍ୟା ଆଗତ ପ୍ରାୟ । ଚିନ୍ତାମଗ୍ନ ଡେଭିଡ୍ ଫେରୁଥିଲେ ରୋଜିଙ୍କ ସହ ନିଜ ବିଶ୍ରାମ କକ୍ଷକୁ । ଚିନ୍ତାରେ ସତେ ଯେପରି ଅନ୍ତଃ ନାହିଁ । ତାଙ୍କ ଆଗରେ ଏବେ ପୁଣି ଏକ କୁହେଳିକା । ବର୍ତ୍ତମାନଯାଏ ଏହି ଅଜଣା ଅତିଥି ବିଷୟରେ କୌଣସି ତଥ୍ୟ ମିଳିନାହିଁ ସେମାନଙ୍କୁ । ବିଶ୍ୱବ୍ରହ୍ମାଣ୍ଡ ଭିତରେ ସୌରମଣ୍ଡଳ ଏକ ଅତି କ୍ଷୁଦ୍ର ଅଞ୍ଚଳ । ବିଶ୍ୱ ବ୍ରହ୍ମାଣ୍ଡକୁ ଯଦି ସାଗରବେଳା ଅସଂଖ୍ୟ କୋଟିକୋଟି ବାଲୁକାରାଶିର ସଂଖ୍ୟାର ସମଷ୍ଟି ବୋଲି ବିବେଚନା କରାଯାଏ ତେବେ ହୁଏତ ଏଥିମଧ୍ୟରୁ ଗୋଟିଏ ବାଲିକଣା ହେଉଛି ସୂର୍ଯ୍ୟ ଓ ସମଗ୍ର ସୌରମଣ୍ଡଳ । ଆକାଶରେ ଉଦୟ ହେଲାଣି ଅସୁମାରୀ ତାରକା ମଣ୍ଡଳୀ । କଣ ତେବେ ଏହି ନୂତନ ଆଗନ୍ତୁକ । ଯାହା ହେଲେ ମଧ୍ୟ ତାହା ବିଷୟରେ ନିର୍ଦ୍ଦିଷ୍ଟ ତଥ୍ୟ ସଂଗ୍ରହ କରିବାକୁ ହେବ, ତାହା ସହିତ ଯମ ଗ୍ରହ ବିଷୟରେ ମଧ୍ୟ ତଥ୍ୟ ସଂଗ୍ରହ କରିବାକୁ ହେବ କ୍ଲାଉଡ୍‌ରୁ । ଏବେ କିନ୍ତୁ ଯମ ବିଷୟ ଛାଡ଼ି ସମସ୍ତେ ଗୁରୁତ୍ୱ ଦେଉଥିଲେ ଯମର

ଗତିପଥର ବ୍ୟତିକ୍ରମ ପାଇଁ ଦାୟୀ ହେଉଥିବା ପଦାର୍ଥ ବିଷୟରେ ବିଶ୍ଳେଷଣ କରିବାପାଇଁ । ରୋଜାଲିନାଙ୍କ କଣ୍ଠସ୍ୱର ଶୁଭିଲାଣି । ଆସ ଡିନର ଖାଇଦେବା । ଡାଇନିଂ ଟେବୁଲ ଆଡେ ଆଗେଇ ଚାଲିଥିଲେ ଡେଭିଡ । ତାଙ୍କ ଆଗରେ ଉପସ୍ଥାପିତ ହେଉଛି ଗୋଟିଏ ପରେ ଗୋଟିଏ ଅସମାହିତ ସୂତ୍ର । ପତି, ପତ୍ନୀ ଡିନର ଟେବୁଲ ଉପରେ ମଧ୍ୟ ଆଲୋଚନାରତ ଥିଲେ ସେହି ବିଷୟରେ । ଦିନରାତି ଖୋଲା ରହିଥିଲା ଗବେଷଣାକେନ୍ଦ୍ର । ସିଫଟ୍ ଅନୁସାରେ ବରିଷ୍ଠ ବୈଜ୍ଞାନିକ ଜ୍ୟାକ୍ସନ, ମୁରୀ, ଡକ୍ଟର ଆଲବର୍ଟ ପ୍ରମୁଖ କ୍ଲାଉଡ଼ ପର୍ଯ୍ୟବେକ୍ଷଣ ଦାୟିତ୍ୱ ନେଇଥିଲେ । ଏହା ବ୍ୟତୀତ ଦିନରାତ୍ରି ଗବେଷଣାଗାର ସମସ୍ତ ବୈଜ୍ଞାନିକମାନଙ୍କ ପାଇଁ ଖୋଲା ରହିଥିଲା । ଯିଏ ଯେତେବେଳେ ଯାଇ ଗବେଷଣା କାର୍ଯ୍ୟ କରିପାରିବ ସେଥିରେ କୌଣସି ବାଧା ନଥିଲା । ଖଟ ଉପରେ ଗଡିପଡିବାକୁ ଚେଷ୍ଟାକରୁଥିଲେ ଡେଭିଡ୍ । ରୋଜି ବ୍ୟସ୍ତଥିଲେ କେତେକ ଘରୋଇ କାମରେ । ଏହି ସମସ୍ୟାର ସମାଧାନ ନହେବା ଯାଏ ସେମା... ଚିନ୍ତାର ପରିସମାପ୍ତି ନାହିଁ ।

କ୍ରିଂ କ୍ରିଂ..... ହଠାତ୍ ଟେଲିଫୋନ ବାଜି ଉଠିଲା । ଡେଭିଡ୍‌ଙ୍କ ଅବଶ ଆଖି ଯୋଡିକ ବୋଧହୁଏ କିଛି ସେକେଣ୍ଡ ପୂର୍ବରୁ ବୁଜିହୋଇ ସାରିଥିଲା । ରୋଜି ଆଗେଇ ଆସିଲେ ଟେଲିଫୋନ ଉଠାଇବାକୁ । ରାତ୍ରି ସାଢ଼େ ୧୨ଟା । କେଉଁଠୁ ଟେଲିଫୋନ ଆସିଲା । ସେପରି କୌଣସି ଗୁରୁତ୍ୱପୂର୍ଣ୍ଣ ଘଟଣା ତ ଘଟି ନାହିଁ । ରୋଜି ଆସିବା ପୂର୍ବରୁ ଡେଭିଡ୍‌ଙ୍କ ବାମ ହାତ ଟେଲିଫୋନର ରିସିଭର ଉଠାଇ ସାରିଥିଲା । ଅପରପାର୍ଶ୍ୱରୁ ଚିତ୍କାର, ଆଲବର୍ଟଙ୍କ କଣ୍ଠସ୍ୱର । ସାର ! ଶୀଘ୍ର ଆପଣ ଆସନ୍ତୁ । ଏକ ନୂତନ ତଥ୍ୟର ସନ୍ଧାନ ମିଳିଛି । ସେତେବେଳେକୁ କ୍ଲାଉଡ଼ରେ ସଂଯୁକ୍ତ ସମସ୍ତ କ୍ୟାମେରା, ସ୍ପେକ୍ଟୋମିଟର, ଟ୍ରାନ୍ସମିଟର ଖୋଲି ସାରିଥାଏ । ଯମ ଗ୍ରହର କିଛି ଦୂରରୁ ମହାକାଶରେ ଉଦଭାସିତ ହେଲାଣି ଏକ ନିଷ୍ପ୍ରଭ ଆଲୋକରେଖା । ବୋଧହୁଏ ଆମେ ଯାହା ଆଶାକରୁଥିଲେ ତାହା ହିଁ ଘଟିବାକୁ ଯାଉଛି । ଏହା ବୋଧହୁଏ ଏକ ନୂତନ ଗ୍ରହର ସ୍ଥିତି ସଂପର୍କରେ ସୂଚନା । ଡେଭିଡ୍ ସତେଯେପରି ପାଗଳ ହୋଇଗଲେ । ସେ ଧାଇଁଥିଲେ ଗବେଷଣାଗାର ଆଡେ । ଦେହରେ ତାଙ୍କର ଯେ ସାର୍ଟ ନାହିଁ । ଆଲମିରାରୁ ସାର୍ଟ ଆଣିବାକୁ ସମୟ ନାହିଁ । ଦେହରେ ରହିଛି ଏକ ଢ଼ୋଲା ପାଇଜାମା, ସେଥିପ୍ରତି ମଧ୍ୟ ତାଙ୍କର ଲକ୍ଷ୍ୟ ନାହିଁ । ବିଶ୍ରାମ ସ୍ଥାନରୁ ଗବେଷଣାଗାରର ଦୂରତା ମାତ୍ର କେତେ ମିଟର । ରୋଜି ପଛେ ପଛେ ଧାଇଁଥିଲେ

ତାଙ୍କର ସାର୍ଟଟି ଧରି । ଚାଲିବା ଭିତରେ ସେ କୌଣସି ମତେ ତାଙ୍କ ଶରୀରରେ ସାର୍ଟ ଖଣ୍ଡକ ଗଳାଇ ଦେବାରେ ସକ୍ଷମ ହେଲେ । ମାତ୍ର ବୋତାମ ମାରିବେ ବା କିପରି ? ଚଳନ୍ତା ବ୍ୟକ୍ତିର କମିଜ ସଜାଡିବା କଣ ସମ୍ଭବ ! ଅନ୍ୟମନସ୍କଭାବେ ବୋତାମ ମାରୁଥିଲେ ଡେଭିଡ୍ । ତଳ ଉପର ଯାହା ଯେଉଁଠି ଲାଗିଲା ସେ ବିଷୟରେ ଚିନ୍ତା କରିବାକୁ, ଦେଖିବାକୁ ତାଙ୍କ ନିକଟରେ ସମୟ ନଥିଲା । ମାତ୍ର କେତେ ମିନିଟ ଭିତରେ ସେ ପହଁଞ୍ଚିଗଲେ ଗବେଷଣାଗାରର ପ୍ରକୋଷ୍ଠ ମଧ୍ୟରେ । ସେଠାରେ କମ୍ପ୍ୟୁଟର ପରଦାରେ ଉଦଭାସିତ ହେଉଥିଲା କ୍ଷୁଦ୍ର ଏକ ଆଲୋକ ରେଖା । ତାହା ଏତେ ନିଷ୍ପ୍ରଭ ଥିଲା ଯେ ଏହା ଯେ ଏକ ଗ୍ରହ ତାହା ସହଜରେ ବାରିହେଉ ନଥିଲା । ଡେଭିଡ୍ ନିର୍ଦ୍ଦେଶଦେଲେ ସେହି ଆଲୋକର ଉତ୍ସକୁ ୫୦ ହଜାର ଗୁଣ ବଢ଼ାଇଦେବାକୁ । ତାହା ହିଁ ନିକଟସ୍ଥ ଇଲୋକଟ୍ରନ ମାଇକ୍ରୋସ୍କୋପରେ ତତ୍‌କ୍ଷଣାତ କରାଗଲା ଓ ତାହାର ଚିତ୍ର ଉଦଭାସିତ ହେଲା ପାଖ କାନ୍ଥର ବୃହତ୍ ପରଦା ଉପରେ । ସମସ୍ତେ ଅବାକ ହୋଇଗଲେ, ଏ କଣ ? ଏହି ଅସ୍ପଷ୍ଟ ଚିତ୍ର ବୃହତ୍‌କାର ହେବାପରେ ଏତିକି ସ୍ପଷ୍ଟ ହୋଇଗଲା ଯେ ଏହା ଏକ ଗ୍ରହ ନିଶ୍ଚିତ କାରଣ ଏଠାରୁ ଆସୁଥିଲା ସ୍ଥିର ଆଲୋକ । ନକ୍ଷତ୍ର ଭଳି ଏହାର ନିଜସ୍ୱ ଆଲୋକ ନଥିଲା ।

## ଆଲୋକର ଆକାର ବୃଦ୍ଧି

ଗବେଷଣାଗାରର ସମସ୍ତ ଦୂରବୀକ୍ଷଣ ଯନ୍ତ୍ରକୁ ନିଷ୍ପ୍ରଭ ଆଲୋକର ସେହି ଉତ୍ସ ଆଡେ ମୁହାଁଇ ରଖିବାକୁ ନିର୍ଦ୍ଦେଶଦେଲେ ଡେଭିଡ୍ । ଏଣିକି ଗବେଷଣାଗାର ୨୪ଘଣ୍ଟା ଦିନରାତି ଖୋଲାରହିବ । ନୈସର୍ଗିକ ଏହି ବିସ୍ମୟ ଆଲୋକର ଉତ୍ସ କଣ ତାହା ଯେ ଯାଏ ଜଣା ନପଡିଛି ସେ ଯାଏ ତାଙ୍କ କାର୍ଯ୍ୟ ଶେଷ ହୋଇନାହିଁ । ଏକ ଜରୁରୀ ବୈଠକ ଡାକିଲେ ଡେଭିଡ୍ । ଜଣକପରେ ଜଣେ ବରିଷ୍ଠ ବୈଜ୍ଞାନିକମାନଙ୍କୁ ଏଭଳି ଏକ କଠିନ କାର୍ଯ୍ୟର ସମୀକ୍ଷା ଦାୟିତ୍ୱ ଅର୍ପଣ କରାଗଲା । ପୃଥିବୀର ଅନ୍ୟାନ୍ୟ ମାନମନ୍ଦିରରେ ହୁଏତ ଏହି ବିଷୟରେ ଗବେଷଣା ଚାଲୁ ରହିଥିବ ମାତ୍ର ଡେଭିଡ୍ ତ ବିଶ୍ୱର ଅନ୍ୟାନ୍ୟ ମାନମନ୍ଦିରରେ କର୍ମରତ ସମସ୍ତ ବୈଜ୍ଞାନିକଙ୍କ ଠାରୁ ବୟସରେ ବରିଷ୍ଠ ଏବଂ ବିଶେଷ ଖ୍ୟାତିସମ୍ପନ୍ନ ତଥା ବିଶେଷଜ୍ଞ । ତେଣୁ ସେ ଅନ୍ୟମାନଙ୍କୁ ଅପେକ୍ଷା ନକରି ନିଜ କାର୍ଯ୍ୟରେ ଅଗ୍ରସର ହୋଇ ଚାଲିଥିଲେ ।

ତାଙ୍କରି ନିର୍ଦ୍ଦେଶରେ ସମସ୍ତ କାର୍ଯ୍ୟକ୍ରମ ବନ୍ଦ ରଖାଯାଇ ସେହି ବିସ୍ମୟଜନକ ଆଲୋକର ଉତ୍ସ ଖୋଜିବା କାର୍ଯ୍ୟକ୍ରମ ଆରମ୍ଭ ହୋଇସାରିଥିଲା । କୋଟି କୋଟି ମାଇଲ ଦୂରରେ ଥିବା ଏହି ଜ୍ୟୋତିଷ୍କରୁ ଆସୁଥିଲା ଅତ୍ୟନ୍ତ କ୍ଷୀଣ ଆଲୋକ ରଶ୍ମି । ପୃଥିବୀଯାଏ ପହଁଞ୍ଚିବାକୁ ଏହାକୁ ଲାଗୁଥିଲା ଅନେକ ସମୟ । ରାତ୍ରି ପାହିଲାଣି କେତେବେଳୁ । ଇତି ମଧ୍ୟରେ ଅତିବାହିତ ହୋଇଗଲାଣି କେତେ ଦିନ କେତେ ରାତି ମାତ୍ର ବିଶ୍ରାମପାଇଁ ସମୟ କାହିଁ, ଗବେଷଣାର ଅନ୍ତଃ ନାହିଁ । ଆଶ୍ଚର୍ଯ୍ୟଜନକଭାବେ ସେହି ଆଲୋକଟିର ଉତ୍ସ କ୍ରମେ ବୃଦ୍ଧି ପାଇବାରେ ଲାଗିଥିଲା । ପ୍ରଥମେ ଏକ ବିନ୍ଦୁପରି ଦିଶୁଥିବା ଆଲୋକଟିଏ ଏବେ ଏକ ଟେନିସ ବଲ ଆକୃତିର ହେବାପରି ଜଣାପଡିଲାଣି । ଅନବରତଭାବେ ଏହି ଆଲୋକର ଉତ୍ସକୁ ପରୀକ୍ଷା କରୁକରୁ ଡେଭିଡ୍ ଆନନ୍ଦରେ ଚିତ୍କାର କରି ଉଠିଲେ । ଘଟଣା କଣ ଜାଣିବାପାଇଁ ସମସ୍ତ ବୈଜ୍ଞାନିକ ତାଙ୍କ ନିକଟରେ ଉପସ୍ଥିତ ହୋଇସାରିଥିଲେ ।



# ଡେଭିଡ ଧୂମକେତୁ

ଡିସେମ୍ବର ୨୬ ତାରିଖର ଏକ ଶୀତଳ ସକାଳ । ଆଜି ବିଶ୍ୱର ବରିଷ୍ଠ ବୈଜ୍ଞାନିକ ଡେଭିଡ୍ ତାଙ୍କର ଦୀର୍ଘ ଏକବର୍ଷ କାଳର କଠୋର ପର୍ଯ୍ୟବେକ୍ଷଣ, ଗବେଷଣାର ତଥ୍ୟ ଉପସ୍ଥାପିତ କରିବେ ପୃଥିବୀର ବିଭିନ୍ନ ଦେଶରୁ ଆସିଥିବା ବଛାବଛା ବୈଜ୍ଞାନିକ, ସାମ୍ବାଦିକମାନଙ୍କ ଆଗରେ । ସେଥିପାଇଁ ସେନିଗାଲର କିଙ୍ଗଷ୍ଟୋନ ମାନମନ୍ଦିର ଆଜି ସକାଳ ପହରୁ ଚଳଚଞ୍ଚଳ ହୋଇସାରିଛି । ଅନେକ ବିଦେଶାଗତ ଅତିଥିଙ୍କୁ ଆତିଥେୟତା ପ୍ରଦାନକରି ମାନମନ୍ଦିରର ବହୁତଳ ବିଶିଷ୍ଟ ଗେଷ୍ଟ ହାଉସ ଆଜି କୋଳାହଳମୟ । ଠିକ୍ ଦିନ ୮ଟାରେ ଡେଭିଡ୍ ତାଙ୍କର ପର୍ଯ୍ୟବେକ୍ଷଣ ରିପୋର୍ଟ ବିଶ୍ୱବାସୀଙ୍କୁ ଶୁଣାଇଲେ । ନିର୍ଦ୍ଧାରିତ କାର୍ଯ୍ୟକ୍ରମ ଅନୁସାରେ ସବୁ ଆୟୋଜନ କରାଯାଇଛି । ମାନମନ୍ଦିରର ଅନ୍ୟାନ୍ୟ ବରିଷ୍ଠ ବୈଜ୍ଞାନିକଗଣ ଜ୍ୟାକ୍ସନ, ମୁରୀ, ଡକ୍ଟର ଆଲବର୍ଟ ପ୍ରମୁଖ ଠିଆହୋଇ ବିଶ୍ୱର ଅନ୍ୟାନ୍ୟ ସ୍ଥାନରୁ ଆସିଥିବା ବରିଷ୍ଠ ବୈଜ୍ଞାନିକ, ଟେଲିଭିଜନ ପ୍ରତିନିଧି ତଥା ଅନ୍ୟାନ୍ୟ ସଂଚାର ପ୍ରତିଷ୍ଠାନର ପ୍ରତିନିଧିମାନଙ୍କୁ ସ୍ୱାଗତ କରି ଭିତରକୁ ପାଛୋଟି ନେଉଛନ୍ତି । ସକାଳର ବ୍ରେକଫାଷ୍ଟ ସେହି ବୈଠକରେ ହିଁ ସମସ୍ତେ ଡେଭିଡ୍‌ଙ୍କ ସହ ଖାଇବେ । ସମସ୍ତ କାର୍ଯ୍ୟକ୍ରମ ପ୍ରାୟ ସରିଗଲାଣି ।

ଠିକ ଆଠଟା ବେଳେ ଡେଭିଡ୍ ଏବଂ ପତ୍ନୀ ରୋଜାଲିନା ଆସି ବୈଠକଶାଳାରେ ଉପସ୍ଥିତ ହେଲେ । ସମସ୍ତେ ଦଣ୍ଡାୟମାନ ହୋଇ ବିଶ୍ୱର ଏହି ବରିଷ୍ଠ ବୈଜ୍ଞାନିକଙ୍କୁ ସମ୍ମାନ ପ୍ରଦର୍ଶନ କରୁଥିଲେ । ଡେଭିଡ୍ ଜଣଜଣ କରି ପ୍ରତ୍ୟେକଙ୍କ ନିକଟକୁ ଯାଇ କରମର୍ଦ୍ଦନ କରି ସହାସ୍ୟ ବଦନରେ ସମସ୍ତଙ୍କର ଭଲମନ୍ଦ ବୁଝୁଥିଲେ । ଯେତେହେଲେ ସମସ୍ତେ ତାଙ୍କରି ପ୍ରତିଷ୍ଠାନର ଆତିଥେୟତା ଲାଭକରି ଏଠାକୁ ଆସିଛନ୍ତି । ସମସ୍ତଙ୍କୁ କଫି ଓ ଜଳଖିଆ ଯୋଗାଇ ଦିଆଗଲାଣି । ବହୁ ପ୍ରତୀକ୍ଷିତ ସେହି ସମୟକୁ ସମସ୍ତଙ୍କର ଅପେକ୍ଷା । ଦୂରଦର୍ଶନ, ସାମ୍ବାଦିକମାନେ କେତେବେଳୁ ପ୍ରସ୍ତୁତ ହୋଇସାରିଲେଣି । ବହୁଦିନର ପରିଶ୍ରମ ଗବେଷଣାର ଫଳ ଆଜି ସମସ୍ତେ

ଡେଭିଡ୍‌ଙ୍କ ମୁହଁରୁ ଶୁଣିବେ । ତାହା ଆଜି ବିଶ୍ୱର ବିଭିନ୍ନ ଟେଲିଭିଜନ ସଂସ୍ଥା ମାଧ୍ୟମରେ ସାରା ବିଶ୍ୱରେ ପ୍ରଚାରିତ ଓ ପ୍ରସାରିତ ହେବ । ସମସ୍ତେ ପ୍ରସ୍ତୁତି । ଡେଭିଡ୍ ପାଟି ଖୋଲିଲେ । ତାଙ୍କ ନିର୍ଦ୍ଦେଶରେ ପ୍ରୋଜେକ୍ଟରକୁ ସଞ୍ଚାଳିତ କରାଗଲା । ଗବେଷଣା କକ୍ଷଟି ସମ୍ପୂର୍ଣ୍ଣରୂପେ ଅନ୍ଧକାର ହୋଇଗଲା କେବଳ ଦେଖାଗଲା କାନ୍ଥର ପରଦା ଉପରେ ସୌରମଣ୍ଡଳ ତଥା ବିଶ୍ୱବ୍ରହ୍ମାଣ୍ଡର ଅଲୌକିକ ଚିତ୍ର । ଡେଭିଡ୍ ଏହିସବୁ ଚିତ୍ର ଦେଖାଉଥିବାବେଳେ ନିଜେ ସେ ସବୁର ବିଶ୍ଳେଷଣ କରୁଥିଲେ । ଡେଭିଡ୍ କହିଲେ ବହୁଦିନ ଧରି ପୃଥିବୀର ବୈଜ୍ଞାନିକମାନଙ୍କୁ ଦ୍ୱନ୍ଦରେ ପକାଇଥିବା ସୌରମଣ୍ଡଳର କିଛି ଦୂରରେ ଦୃଶ୍ୟ ହୋଇଥିବା ଏକ କ୍ଷୁଦ୍ର ଆଲୋକବର୍ତ୍ତିକା ଯାହାକୁ ଅନେକ ସୌରମଣ୍ଡଳର ଦଶମ ଗ୍ରହ ଆଖ୍ୟା ଦେଇଥିଲେ ତାହା ଏକ ଗ୍ରହ ନୁହେଁ ଏକ ଧୂମକେତୁ । ଏକ ନୂତନ ଧୂମକେତୁର ଆବିର୍ଭାବ ଡେଭିଡ୍‌ଙ୍କ ଦ୍ୱାରା ଘୋଷିତ ହେବା ମାତ୍ରେ ସାରା ବୈଠକଖାନାରେ ଚାଞ୍ଚଲ୍ୟ ଖେଳିଗଲା । ଡେଭିଡ୍ ସେହି ଧୂମକେତୁର ପୂର୍ବରୁ ଗ୍ରହଣ କରାଯାଇଥିବା ସମସ୍ତ ଚିତ୍ରକୁ ପ୍ରୋଜେକ୍ଟର ମାଧ୍ୟମରେ ସମସ୍ତଙ୍କୁ ଦେଖାଇଦେଉଥିଲେ । କ୍ରମେ ତାହା କିପରି ସୌରମଣ୍ଡଳ ଆଡକୁ ଅଗ୍ରସର ହେଉଛି ଓ ଆଉକିଛି ବର୍ଷ ଭିତରେ ଏହା ସୌରଜଗତର ଅନେକ ଗ୍ରହଙ୍କୁ ଅତିକ୍ରମ କରି ଫେରିବ ତାହା ସେ ସମସ୍ତଙ୍କୁ ବୁଝାଉଥିଲେ । ଧୂମକେତୁଟି ପ୍ରତି ସେକେଣ୍ଡରେ ଲକ୍ଷଲକ୍ଷ ମାଇଲ ବେଗରେ ବେଗଗାମୀ ରହି ସୌରମଣ୍ଡଳ ଆଡକୁ ଅଗ୍ରସର ହେଉଥିବା ବିଷୟ ଜାଣିବାପରେ ବିଶ୍ୱର ସମସ୍ତ ବୈଜ୍ଞାନିକ ଆନନ୍ଦିତ ହୋଇଥିଲେ । କାରଣ ଏହି ମହାଜାଗତିକ ନୂତନ ଅତିଥିଙ୍କୁ ହୁଏତ ଅଳ୍ପ କେତେ ବର୍ଷପରେ ପୃଥିବୀବାସୀ ଦେଖିବାର ସୌଭାଗ୍ୟ ଲାଭ କରିପାରିବେ । ଡେଭିଡ୍ କହିଲେ ଯେ ଏହି ଧୂମକେତୁ ଓର୍ଟ ମେଘମାଳା ଅଞ୍ଚଳ ତ୍ୟାଗକରି କୌଣସି ନୈସର୍ଗିକ ବସ୍ତୁର ଆକର୍ଷଣରେ ସୌରମଣ୍ଡଳ ଆଡକୁ ମାଡିଆସୁଛି । ଏବେ ଏହାର ଆକାର ଗୋଲାକାର ରହିଛି ଏବଂ ଏହା ସୂର୍ଯ୍ୟର ଯେତେ ନିକଟବର୍ତ୍ତୀ ହେବ ଏହାର ଆକାର ଓ ପୁଚ୍ଛ ସେତେ ବୃଦ୍ଧିପାଇ ଚାଲିବ । ଓର୍ଟ ମେଘମାଳା ଅଞ୍ଚଳରେ ପ୍ରାୟ ଲକ୍ଷାଧିକ ଧୂମକେତୁ ନିସ୍ତେଜ ଅବସ୍ଥାରେ ରହିଛନ୍ତି । ଏହି ଧୂମକେତୁ ଗୁଡିକ କଠିନ ଶିଳା, ବରଫ, ବାଷ୍ପ ଦ୍ୱାରା ଗଠିତ ହୋଇଥାଏ । ସୂର୍ଯ୍ୟର ନିକଟବର୍ତ୍ତୀ ହେବାମାତ୍ରେ ଧୂମକେତୁର ଗୋଲାକାର ଶରୀର ଭିତରେ ଥିବା ଗ୍ୟାସ ଉପରେ ସୂର୍ଯ୍ୟାଲୋକ ପଡିବାଦ୍ୱାରା ଚାପ ଓ ତାପ ସୃଷ୍ଟିହୁଏ ଓ ଏହା ଲାଞ୍ଜପରି ବାହାରି ଆସି ଧୂମକେତୁର ଗୋଟିଏ ପାର୍ଶ୍ୱରେ

କୋଟିକୋଟି ମାଇଲ ଯାଏ ଲମ୍ବିଯାଇ ଲାଞ୍ଜ ସୃଷ୍ଟିକରେ । ମାତ୍ର ସୂର୍ଯ୍ୟଠାରୁ ଦୂରକୁ ଚାଲିଯିବାପରେ ଏହା ଉତ୍ତାପ ନପାଇବାରୁ ଲାଞ୍ଜଟି କ୍ରମେ ମଳିନ ହୋଇ ଶେଷରେ ବିଲୀନ ହୋଇଯାଏ । ଧୂମକେତୁର ପୁଚ୍ଛ ଆକୃତି ବା ଲାଞ୍ଜରେ ସାଧାରଣତଃ ଜଳୀୟବାଷ୍ପ, କାର୍ବନ ମନୋକସାଇଡ, ଆମୋନିଆ ପଦାର୍ଥ ଭଳି ଗ୍ୟାସ ରହିଥାଏ । ଡେଭିଡ୍ କହିଲେ ନିକଟରେ ଏହି ନୈସର୍ଗିକ ପଦାର୍ଥ ଏକ ଧୂମକେତୁ ବୋଲି ଜଣାପଡିଛି । ଏହାର ଗତିପଥ କିନ୍ତୁ ନିର୍ଦ୍ଧାରିତ ହୋଇନାହିଁ । ଖୁବ୍ ଶୀଘ୍ର ଏହାର ଗତିପଥ ଉପରେ ଗବେଷଣା କରାଯାଇ ଏହା ପୃଥିବୀବାସୀଙ୍କୁ ଜଣାଇଦିଆଯିବ । ଏହି ଧୂମକେତୁ ପୃଥିବୀବାସୀଙ୍କୁ ଦୃଷ୍ଟିଗୋଚର ହେବ କି ନାହିଁ ଏବଂ କେବେ ହେବ ତାହାର ଗଣନା କାର୍ଯ୍ୟ ପରବର୍ତ୍ତୀ ପର୍ଯ୍ୟାୟରେ ଆରମ୍ଭ ହେବବୋଲି ସେ ଘୋଷଣା କରିଥିଲେ ।

ତାଙ୍କର ଏହି ନୂତନ ଧୂମକେତୁର ଆବିଷ୍କାର ପାଇଁ ସମସ୍ତ ବୈଜ୍ଞାନିକ, ସାମ୍ବାଦିକମାନେ ଡେଭିଡ୍‌ଙ୍କୁ ଧନ୍ୟବାଦ ଜଣାଉଥିଲେ । ତାଙ୍କୁ ନମସ୍କାର କରି ଏହି ବିରଳ କୃତିତ୍ୱ ହାସଲ କରିଥିବାରୁ 'ଜମ ଗ୍ରହ ଅଭିଯାନ'ର ଦାୟିତ୍ୱରେ ଥିବା ବିଶିଷ୍ଟ ବୈଜ୍ଞାନିକ ରବର୍ଟ ଷ୍ଟୋହେଲ ମଧ୍ୟ ଡେଭିଡ୍‌ଙ୍କୁ ଧନ୍ୟବାଦ ଜଣାଉଥିଲେ । ଡେଭିଡ୍ ଏହି ଧୂମକେତୁକୁ ପ୍ରଥମେ ଆବିଷ୍କାର କରିଥିବାରୁ ତାଙ୍କର ନାମ ଅନୁସାରେ ଏହି ଧୂମକେତୁର ନାମକରଣ କରାଯାଇଥିଲା **"ଡେଭିଡ୍ ଧୂମକେତୁ"** ।

ସେହିଦିନ ସଂନ୍ଧ୍ୟାରେ ଡେଭିଡ୍‌ଙ୍କର ଏହି ଅଲୌକିକ ନୂତନ ଆବିଷ୍କାର ବିଷୟରେ ସାରା ପୃଥିବୀର ସମସ୍ତ ସମ୍ବାଦପତ୍ର ପ୍ରଥମ ପୃଷ୍ଠାରେ ସମ୍ବାଦମାନ ପ୍ରକାଶ ପାଇଥିଲା । ଯୁକ୍ତରାଷ୍ଟ୍ରର ରାଷ୍ଟ୍ରପତି, ଅନ୍ୟାନ୍ୟ ଦେଶର ରାଷ୍ଟ୍ରମୁଖ୍ୟମାନେ ଏଥିପାଇଁ ବଧେଇ ବାର୍ତ୍ତା ପଠାଇଥିଲେ ଡେଭିଡ୍‌ଙ୍କ ନିକଟକୁ ..... ।



# ଧୂମକେତୁର ଗତିପଥ



ଇତି ମଧ୍ୟରେ କ୍ଲାଉଡ଼ ମହାକାଶ ଯାନ ଯମ ଗ୍ରହର ଖୁବ୍ ନିକଟରେ ପହଞ୍ଚିଗଲାଣି । ଯମ ଗ୍ରହ ଓ ତାର ଏକମାତ୍ର ଉପଗ୍ରହ ଚାରନ ବିଷୟରେ ତଥ୍ୟ ସଂଗ୍ରହରେ ପୃଥିବୀର ଅନେକ ଟେଲିସ୍କୋପ ବା ମାନମନ୍ଦିର ବ୍ୟସ୍ତ ରହିଥିବା ବେଳେ ସେନିଗାଲସ୍ଥିତ ମାନମନ୍ଦିର ଓ ଗବେଷଣା କେନ୍ଦ୍ରର ମୁଖ୍ୟକାର୍ଯ୍ୟ ଥିଲା ଡେଭିଡ୍ ଧୂମକେତୁର ଗତିପଥ ନିର୍ଦ୍ଧାରଣ କରିବା । ଏହି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକ୍ରମର ସଞ୍ଚାଳନ ଭାର ଡକ୍ଟର ଆଲବର୍ଟଙ୍କ ଉପରେ ନ୍ୟସ୍ତ ରହିଥିଲେ ମଧ୍ୟ ପ୍ରମୁଖ ପରାମର୍ଶଦାତା

ଥିଲେ ଏହି ଧୂମକେତୁର ଉଦ୍ଭାବକ ଡେଭିଡ୍ । ତାଙ୍କ ନିକଟରେ ସମୟର ଘୋର ଅଭାବ। ଦିନରତି ଏକାଗ୍ରଚିତ୍ତରେ ସେ ଲାଗିଥିଲେ ଏହି ଧୂମକେତୁ ପର୍ଯ୍ୟବେକ୍ଷଣରେ। ଏହି ଧୂମକେତୁର ଗତିପଥ ରହିଥିଲା ଅଣ୍ଡାକୃତି । ଏହା ସୌରମଣ୍ଡଳର ଖୁବ ନିକଟରେ ପହଞ୍ଚି ସାରିଥିଲା । ଏହି ଧୂମକେତୁ ଅଣ୍ଡାକୃତି ପଥରେ ଗତିକରି ଯିବାବେଳେ ସୌରମଣ୍ଡଳର ବିଭିନ୍ନ ଗ୍ରହ ସର୍ବୋପରି ସୂର୍ଯ୍ୟଦ୍ୱାରା ଆକର୍ଷିତ ହୋଇ କେତେକାଶଂରେ ଏହାର ଗତିପଥରେ ସାମାନ୍ୟ ପରିପର୍ତ୍ତନ କରିବାର ସମ୍ଭାବନା ରହିଥିବା ବିଷୟରେ ସେ ଗବେଷଣା କରୁଥିଲେ ।

ରାତ୍ରି ୧୨ଟା ହେଲାଣି । ଇତି ମଧ୍ୟରେ ଧୂମକେତୁର ଆବିଷ୍କାର ଘୋଷଣା କରାଯିବା କେତେ ଦିନ ବିତିଗଲାଣି । ତାଙ୍କୁ ଆଜି ଯେପରି ହେଉ ଧୂମକେତୁର ଗତିପଥ ନିର୍ଦ୍ଧାରିତ ତଥ୍ୟ ବାହାର କରିବାକୁ ହେବ । ମନକୁ ମନ କହୁଥିଲେ ଡେଭିଡ୍ । ତାଙ୍କ ନିକଟରେ ସେତେବେଳଯାଏ କାର୍ଯ୍ୟରତ ଥିଲେ ବୈଜ୍ଞାନିକ ଡକ୍ଟର ଆଲବର୍ଟ ଓ ବୈଜ୍ଞାନିକ ମୁରୀ । ଧୂମକେତୁର ଗତି, ସଞ୍ଚାଳନ ବେଗ ଓ ଗତିପଥ ନିର୍ଦ୍ଧାରିତ କରୁଥିବା କମ୍ପ୍ୟୁଟରର ପରଦା ସମସ୍ତଙ୍କ ଆଗରେ ଉଦ୍‌ଭାସିତ ହେଉଥିଲା । ସୁଇଚ୍ ଟିପିଲେ ଡେଭିଡ୍ । କାରଣ ଏଥି ପୂର୍ବରୁ ଧୂମକେତୁ ବିଷୟରେ ସମସ୍ତ ତଥ୍ୟ କମ୍ପ୍ୟୁଟରରେ ଲିପିବଦ୍ଧ କରାଯାଇସାରିଛି । କମ୍ପ୍ୟୁଟର କେବଳ ଶେଷ ଗତିପଥ ସୂଚକ ରେଖାଚିତ୍ର ସମସ୍ତଙ୍କ ଆଗରେ ଉପସ୍ଥାପିତ କରିବ । ସମସ୍ତଙ୍କର ଉତ୍କଣ୍ଠା, ଅପେକ୍ଷା, ଏକଗ୍ରତା କ୍ରମେ ବଢ଼ିବଢ଼ି ଚାଲିଛି । ସମସ୍ତେ ଏକ ଲୟରେ ଚାହିଁଛନ୍ତି କମ୍ପ୍ୟୁଟର ପରଦା ଆଡକୁ । ଧୂମକେତୁର ଗତିପଥ ସୂଚକ ରେଖା ସୌରମଣ୍ଡଳର ଶେଷଗ୍ରହ ଯମକୁ ଅତିକ୍ରମକରି ସୌରମଣ୍ଡଳର ଆଭ୍ୟନ୍ତର ଆଡକୁ ଆଗେଇ ଆସୁଥିଲା । ବୃହସ୍ପତି ଗ୍ରହର ଖୁବ ନିକଟଦେଇ ଏହି ରେଖା ଅତିକ୍ରମ କରୁଥିବାରୁ ଡେଭିଡ୍ ଆଶ୍ଚର୍ଯ୍ୟ ହେଉଥିଲେ । ବୋଧହୁଏ ବୃହସ୍ପତି ଗ୍ରହର ଆକର୍ଷଣ ଯୋଗୁ ଏହି ସମୟରେ ଧୂମକେତୁଟି କେତେକାଂଶରେ ପ୍ରଭାବିତ ହୋଇପାରେ । ସେହି ଅଣ୍ଡାକୃତି ରେଖା କ୍ରମେ ଆଗେଇ ଚାଲିଥିଲା ଆହୁରି ଆଗକୁ - ବୃହସ୍ପତି ଛାଡ଼ି ମଙ୍ଗଳ ଗ୍ରହକୁ ଟପିଯିବାକୁ ବସିଲାଣି, ଏବେ ପୃଥିବୀର ପାଳି । ମାତ୍ର ଏ କଣ ?? ସମସ୍ତଙ୍କୁ ହତବାକ କରି ସେହି ରେଖାଟି ସିଧା ଆଗେଇଥିଲା ପୃଥିବୀର ମୁହାଁମୁହିଁ ଏବଂ ପୃଥିବୀର ବକ୍ଷଦେଇ ଗତିକରିବାର ଉପକ୍ରମ କରୁଥିଲା । ଅଜାଣତରେ ଡେଭିଡ୍‌ଙ୍କ ସମଗ୍ର ଶରୀରରୁ ଝାଳ ବୋହି ଗଲାଣି ସେତେବେଳକୁ । ତାଙ୍କର ପିନ୍ଧିଥିବା ଲୁଗାପଟା ଓଦା ହୋଇଗଲାଣି ।

ଅନ୍ୟ ବୈଜ୍ଞାନିକ ମାନଙ୍କ ଅବସ୍ଥା ମଧ୍ୟ ସେହିପରି ହେଲାଣି । ଏ କଣ ? ପୃଥିବୀ ସହିତ ସିଧାସଳଖ ସଂଘର୍ଷ ଘଟିବ ଏହି ଧୂମକେତୁର ! ନାଁ ଏହା କେବେ ହୋଇପାରେ ନାଁ । ହୁଏତ କମ୍ପ୍ୟୁଟରରେ କିଛି ଭୁଲ ରହିଯାଇଛି । ଆଉ ଥରେ ସଞ୍ଚାଳନ କର କମ୍ପ୍ୟୁଟରକୁ । ମୂଳରୁ ନିର୍ଦ୍ଦେଶ ଦେଉଥିଲେ ବୈଜ୍ଞାନିକ ଡେଭିଡ୍ ।

ଗବେଷଣାଗାରର ଘଣ୍ଟାରେ ଠନ୍, ଠନ୍, ଠନ୍‌ହୋଇ ୩ଥର ଶବ୍ଦ ହୋଇ ରାତ୍ରି ୩ଟା ବାଜିବା ସମସ୍ତଙ୍କୁ ଜଣାଇଦେଲା । ଝାଳରେ ଜୁଡୁବୁଡୁ ହେଉଥିବା ସମସ୍ତ ବୈଜ୍ଞାନିକଙ୍କ ଆଖି ଆଗରେ ଜଳୁଥିଲା ଅସଂଖ୍ୟ ଜୁଳୁଜୁଳିଆ ପୋକ । ଉଜ୍ଜ୍ୱଳ ନିୟନ ଆଲୋକର ଉଜ୍ଜ୍ୱଳତା ସତ୍ୱେ ସମସ୍ତେ ଯେପରି ଘନ ଅନ୍ଧକାର ଭିତରେ ଘାଣ୍ଟି ହେଉଥିଲେ । କିଏ କାହାକୁ କଣ କହିବେ କିଛି ଜାଣିପାରୁ ନଥିଲେ । ପୃଥିବୀର ଅନେକ ମାନବ ଶାନ୍ତିରେ ନିଦ୍ରାଯାଇଥିଲେ । ମାତ୍ର ଅନିଦ୍ରା ରଜନୀ ବିନିଦ୍ର ଏକ ଭୟଙ୍କର ଭବିଷ୍ୟତର ଚିତ୍ର ଦେଖୁଥିଲେ କେତେଜଣ ବରିଷ୍ଠ ବୈଜ୍ଞାନିକ ସେନିଗାଲର କିଙ୍ଗଷ୍ଟୋନ ଟେଲିସ୍କୋପ ଗବେଷଣା କେନ୍ଦ୍ର ଭିତରେ । ଦୀର୍ଘ ନିଶ୍ୱାସ ଛାଡୁ ଛାଡୁ ଡେଭିଡ୍ କହିଲେ, ଆଉଥରେ କମ୍ପ୍ୟୁଟରକୁ ସଂଚାଳନ କର ଆଲବର୍ଟ । ତାଙ୍କ କଣ୍ଠରେ କିନ୍ତୁ ହତାଶାଭାବ ସ୍ପଷ୍ଟ ବାରିହୋଇ ପଡୁଥିଲା । ଆଲବର୍ଟ ମଧ୍ୟ ବ୍ୟସ୍ତ ହୋଇ ସାରିଥିଲେ । ପୁଣି ଆରମ୍ଭହେଲା ଗଣନା କାର୍ଯ୍ୟ । ପୂର୍ବ ନିର୍ଦ୍ଧାରିତ ଅବସ୍ଥା ଅନୁସାରେ କମ୍ପ୍ୟୁଟର ସଂଚାଳିତ ହେବାମାତ୍ରେ ଭାସି ଉଠିଲା ସେହି ପୂର୍ବ ଚିତ୍ର ସମସ୍ତଙ୍କ ଆଖି ଆଗରେ - ଯମ ଗ୍ରହ ଗଲାପରେ ବୃହସ୍ପତିର ଖୁବ ନିକଟଦେଇ ଧୂମକେତୁର ଯାତ୍ରା..... ଏହାପରେ ମଙ୍ଗଳ ଗ୍ରହ..... ଓ ପରେ ପରେ ସିଧାସଳଖ ପୃଥିବୀ ସହ ସଂଘର୍ଷ..... ନାଁ ନାଁ ଏହା ହୋଇପାରେ ନାଁ । ବନ୍ଦକର କମ୍ପ୍ୟୁଟର, ବନ୍ଦକର..... ଏହି ତଥ୍ୟ ସମ୍ପୂର୍ଣ୍ଣ ଭୁଲ..... ଚିତ୍କାର କରୁଥିଲେ ଡେଭିଡ୍ ।

ଡେଭିଡ୍‌ଙ୍କ ପରି ଜଣେ ବିଶ୍ୱବିଖ୍ୟାତ ଜ୍ୟୋତିର୍ବିଜ୍ଞାନୀ ବୈଜ୍ଞାନିକଙ୍କୁ କିଏ ବା ବୁଝାଇବ । ଅସହାୟଭାବେ ବସିଥିଲେ ସମସ୍ତ ବୈଜ୍ଞାନିକ ମଣ୍ଡଳୀ । କେତେବେଳେ ରାତ୍ରି ପାହିଲା କାହାକୁ ଜଣା ନାହିଁ । ରୋଜାଲିନାଙ୍କ ପ୍ରବେଶ ପରେ ବୋଧହୁଏ ସମସ୍ତେ ସଚେତନ ହେଲେ । ରୋଜି ମଧ୍ୟ ସମସ୍ତଙ୍କର ଏ ପ୍ରକାର ଅସ୍ୱାଭାବିକ ପରିବର୍ତ୍ତିତ ଅବସ୍ଥା ଦେଖି ଆଶ୍ଚର୍ଯ୍ୟ ହେଉଥିଲେ । ତେବେ କଣ ସାରା ରାତ୍ରି ସମସ୍ତେ କଟାଇଛନ୍ତି ଏହି ଗବେଷଣା କେନ୍ଦ୍ରରେ ବିନିଦ୍ରଭାବେ । ସେ କିଛି ବୁଝିପାରୁ ନଥିଲେ ।

କଥା କ'ଣ ? ସମସ୍ତେ ଯେ ନିରୁତ୍ତର । ଡେଭିଡ୍‌ଙ୍କୁ ସେ ପଚାରିଲେ ମାତ୍ର କାହାଠାରୁ କୌଣସି ଉତ୍ତର ଯେ ମିଳୁନାହିଁ । ଡକ୍ଟର ଆଲବର୍ଟ ! ଚିତ୍କାର କଲେ ରୋଜୀ, ଘଟଣା କଣ ? ପର ମୂହୁର୍ତ୍ତରେ ଆଲବର୍ଟଙ୍କ ହାତ କମ୍ପ୍ୟୁଟରର ସୁଇଚ୍ ଉପରେ ପଡିଲା..... ଓ ତା' ପରେ ପୁଣି ସେହି କରାଳ ଦୃଶ୍ୟ ସମସ୍ତଙ୍କ ଆଖି ଆଗରେ ଉଦଭାସିତ ହେଲା..... ''ଓ ଗଡ'' ପଦୁଟିଏ କଥା କହି ରୋଜି ମଧ୍ୟ ବସିପଡିଲେ ଅସହାୟ ଭାବେ ।



# ପୃଥିବୀ ମୁହାଁ ଧୂମକେତୁ

ଇତିମଧ୍ୟରେ କେତେ ସମୟ ଅତିବାହିତ ହୋଇଗଲାଣି ଜଣାନାହିଁ କାହାକୁ । କ୍ରିଂ, କ୍ରିଂ, କ୍ରିଂ..... ହଠାତ୍ ଗବେଷଣାଗାରର ଟେଲିଫୋନ ବାଜି ଉଠିଲା ଠିକ ଡେଭିଡ୍‌ଙ୍କ ହାତ ନିକଟରେ । ଅନାଗ୍ରହ ସତ୍ତ୍ୱେ ନିକଟରେ ବସିଥିବା ମୁରୀ ଟେଲିଫୋନଟିକୁ ଉଠାଇଲେ । ଅପରପାର୍ଶ୍ୱରୁ ଶୁଭୁଥିଲା ରବର୍ଟ ଷ୍ଟୋହେଲଙ୍କ କଣ୍ଠ ସ୍ୱର । ଲର୍ଡବ୍ରିଜ ରେଡ଼ିଓ ଟେଲିସ୍କୋପ କେନ୍ଦ୍ରର ସେ ହେଉଛନ୍ତି ଅଧ୍ୟକ୍ଷ । ସେ ଚାହୁଁଥିଲେ କଥା ହେବାକୁ ଡେଭିଡ୍‌ଙ୍କ ସହିତ । ଏକ ଖୁସି ସମ୍ବାଦ ସାର । ଟେଲିଫୋନଟିକୁ ଡେଭିଡ୍ ଧରୁଧରୁ ଅପରପାର୍ଶ୍ୱରୁ ଭାସିଆସୁଥିଲା ଷ୍ଟୋହେଲଙ୍କ କଣ୍ଠସ୍ୱର । କି ଖୁସି ସମ୍ବାଦ ଦେବେ ଷ୍ଟୋହେଲେ ତାଙ୍କୁ ଆଜି । ପୃଥିବୀପାଇଁ ଯେପରି ଆଜିଠାରୁ ସମସ୍ତ ପ୍ରକାର ଖୁସି ସମ୍ବାଦ ସରିଯାଇଛି । ଆଜିଠାରୁ ପୃଥିବୀବାସୀଙ୍କ ପାଇଁ କେବଳ ଦୁଃଖ ଆଉ ଦୁଃଖର ସମ୍ବାଦ ବ୍ୟତୀତ ଅନ୍ୟ କିଛି ହୁଏତ ନାହିଁ । ତଥାପି ନିରବ ରହିଲେ ଡେଭିଡ୍ । ସେପଟରୁ ଶୁଭୁଥିଲା ହର୍ଷୋତଫୁଲ୍ଲ ରବର୍ଟ ଷ୍ଟୋହେଲଙ୍କ କଣ୍ଠସ୍ୱର । ସାର୍ ! ଆପଣ ଚ଼ଳିତ ବର୍ଷର ଆଷ୍ଟ୍ରୋଫିଜିକ୍ସରେ ନୋବେଲ ପ୍ରାଇଜ ବିଜୟୀ ହୋଇଛନ୍ତି । ଏହା ସମସ୍ତଙ୍କ ପାଇଁ ଏକ ଗର୍ବ ଓ ଗୌରବର ବିଷୟ ସାର୍ । ମାତ୍ର ଏ କଣ ? ରବର୍ଟଙ୍କ ଠାରୁ ଏତେ ବଡ ଖୁସି ଖବର ପାଇଁ ମଧ୍ୟ କୌଣସି ପ୍ରତିକ୍ରିୟା ନାହିଁ, ଆନନ୍ଦ ହେବାର ସାମାନ୍ୟତମ ସୂଚ଼ନା ମଧ୍ୟ ମିଳୁନାହିଁ । ଆଉ ନୋବେଲ ପ୍ରାଇଜର କି ଆବଶ୍ୟକତା ରବର୍ଟ - ଅତ୍ୟନ୍ତ ଅସହାୟ ଭାବେ କହୁଥିଲେ ଡେଭିଡ୍ । ନୋବେଲ ପ୍ରାଇଜ ପଦୁଟିଏ କଥା ଡେଭିଡ୍‌ଙ୍କ ମୁହଁରୁ ବାହାରି ପଡିବା ମାତ୍ରେ ଉପସ୍ଥିତ ସମସ୍ତ ସହ ବୈଜ୍ଞାନିକ ଏକାବେଳେ ଠିଆହୋଇପଡିଲେ । ରୋଜି ମଧ୍ୟ ଆନନ୍ଦିତ ହେବାପରି ଉଠିପଡିଲେ ମାତ୍ର ପରମୁହୂର୍ତ୍ତରେ ଉଜ୍ଜ୍ୱଳ ଚ଼ନ୍ଦ୍ରାଲୋକ ଉପରକୁ ହଠାତ୍ ମାଡିଆସୁଥିବା କଳାହାଣ୍ଡିଆ ବାଦଲ ଫଳରେ ଶୀତଳ ଚ଼ନ୍ଦ୍ରଲୋକ ଯେପରି ଖୁବଶୀଘ୍ର ଲୁଚିଯାଇ ଅମା ଅନ୍ଧକାର ବିସ୍ତାରିତ ହୁଏ ଠିକ୍ ସେହି ଅବସ୍ଥା ହିଁ ସୃଷ୍ଟି ହୋଇଗଲା ଗବେଷଣା କେନ୍ଦ୍ରର କୋଠରୀରେ । ଘଟଣା କ'ଣ ବୁଝିପାରୁ ନଥିଲେ ସେତେବେଳେ ଯାଏ ରବର୍ଟ । ବାଧହୋଇ ସେ ଟେଲିଫୋନ ରଖିଲେ । ସବୁ

ବୈଜ୍ଞାନିକଙ୍କ ପାଇଁ ସବୁଠାରୁ ବଡ଼ ସମ୍ମାନ, ଜୀବନବ୍ୟାପି ପରିଶ୍ରମ, ଗବେଷଣାର ଫଳ ନୋବେଲ ପୁରସ୍କାର ପାଇ ମଧ୍ୟ ଆଜି ଡେଭିଡ୍ ଖୁସି ନୁହଁନ୍ତି । ତାଙ୍କର ଜ୍ୟୋତିର୍ବିଜ୍ଞାନରେ ଅନବଦ୍ୟ ଅବଦାନ ପାଇଁ ତଥା ଡେଭିଡ୍ ଧୂମକେତୁର ଆବିଷ୍କାର ପାଇଁ ତାଙ୍କୁ ଏଭଳି ସମ୍ମାନଜନକ ପୁରସ୍କାର ପ୍ରଦାନ କରାଯାଇଛି - ଏଭଳି ସମ୍ବାଦପାଇ ମଧ୍ୟ ସେ ହତୋତ୍ସାହିତ ହେବାର କାରଣ କ'ଣ ? ହୁଏତ କୌଣସି ଏକ ଗୁରୁତର ସମସ୍ୟାରେ ସମ୍ମୁଖୀନ ସିଏ । ନିଶ୍ଚିତ ମୃତ୍ୟୁ ମୁଖରେ ପତିତ ହେଲେ ମଧ୍ୟ ଏତେବଡ଼ ସୁସମ୍ବାଦପାଇ ଯେ କେହି ଥରେ ହୁଏତ ଖୁସି ହେବ ମାତ୍ର ଡେଭିଡ୍‌ଙ୍କର ଏ ପ୍ରକାର ବ୍ୟତିକ୍ରମ କାହିଁକି ? କଣ ତାଙ୍କର ସମସ୍ୟା, ସେ କଣ ଭୀଷଣ ଭାବେ ଅସୁସ୍ଥ । ଏଭଳି କେତେ କଣ ଚିନ୍ତାକରି ଚାଲିଥିଲେ ରବର୍ଟ ମାତ୍ର ଏହାର କାରଣ ବିଷୟରେ ତାଙ୍କୁ କିଛି ଥଳକୂଳ ମିଳୁନଥିଲା..... ।



# ପୃଥିବୀରେ ଆଲୋଡନ

ଡେଭିଡ୍ ଧୂମକେତୁ ଗତିପଥ ନିର୍ଦ୍ଧାରଣ କରିଥିବା ସମସ୍ତ କାଗଜପତ୍ର ଓ ତଥ୍ୟ ଆଉଥରେ ପରୀକ୍ଷା କରିବାକୁ ଇଛାକଲେ ଡେଭିଡ୍ । ତାଙ୍କରି ନାମରେ ନାମିତ ଧୂମକେତୁ ଯେ ପୃଥିବୀରେ ପ୍ରଳୟ ରଚାଇବାକୁ ଯାଉଛି ଏହାଠାରୁବଳି କ୍ଷୋଭର ବିଷୟ କଣ ଥାଇପାରେ ଆଉ ତାଙ୍କ ନିକଟରେ । ଏହି ବୃହତ୍‌କାୟ ଧୂମକେତୁ କ୍ରମେ ଘଣ୍ଟାକୁ ହଜାର ହଜାର ମାଇଲ ବେଗରେ ଧାବମାନ ହୋଇ ଆସୁଥିଲା ପୃଥିବୀ ଆଡକୁ । ଶେଷ ପରୀକ୍ଷା ଯେତେବେଳେଯାଏ ନ ସରିଛି ସେ ଯାଏ ଧୂମକେତୁ ବିଷୟରେ ପୃଥିବୀ ବାସୀଙ୍କୁ ଜଣାଇ କିଛି ଲାଭ ନାହିଁ ।



ସମସ୍ତ କାଗଜପତ୍ରକୁ ତନ୍ନ ତନ୍ନକରି ପରୀକ୍ଷା କରୁଥିଲେ ଡେଭିଡ୍ । ଏଭଳି ବିଶାଳକାୟ ଧୂମକେତୁ ସହ ପୃଥିବୀର ସଂଘର୍ଷ ପ୍ରାୟ ପ୍ରତି ୬ଲକ୍ଷ ବର୍ଷରେ ଥରେ ହେବାର ସମ୍ଭାବନା ରହିଛି । ତେବେ କଣ ଏଥର ପୃଥିବୀର ଧ୍ୱଂସ ଅନିବାର୍ଯ୍ୟ । ସେ ସମସ୍ତ ତଥ୍ୟକୁ କମ୍ପ୍ୟୁଟର ଭିତରେ ଫିଡ୍‌କରି ଧୂମକେତୁର ସଞ୍ଚାଳନ ପଥ ବିଷୟରେ ତନ୍ନତନ୍ନ କରି ପରୀକ୍ଷା କରୁଥିଲେ । ବିଷାଦ ମନରେ କେତେଜଣ ବରିଷ୍ଠ ବୈଜ୍ଞାନିକ କିଂ କର୍ତ୍ତବ୍ୟ ବିମୂଢ଼ ହୋଇ କେବଳ ତାଙ୍କରି ନିକଟରେ ବସିରହି ତାଙ୍କର ଶେଷ ପର୍ଯ୍ୟବେକ୍ଷଣ ପ୍ରକ୍ରିୟାକୁ ଲକ୍ଷ କରୁଥିଲେ । ନାଁ ସମସ୍ତ ଉଦ୍ୟମ ବ୍ୟର୍ଥ.... କେବଳ ନିରାଶା ହିଁ ନିରାଶା । ବାରମ୍ବାର କମ୍ପ୍ୟୁଟର ପରଦା ଉପରେ ଧୂମକେତୁର ଅଣ୍ଡାକୃତି ଗତିପଥ ନିର୍ଦ୍ଧାରିତ ହୋଇ ଆସୁଥିଲା ଓ ଏହି ପ୍ରକ୍ରିୟାର ଶେଷ ଦୃଶ୍ୟ ଥିଲା ପୃଥିବୀ ସହ ଏହାର ଧକ୍କା । ମୁଣ୍ଡରେ ହାତଦେଇ ବସିଥିଲେ ପୃଥିବୀର ବରିଷ୍ଠ ବୈଜ୍ଞାନିକ ଡେଭିଡ୍ ଅସହାୟ ଭାବେ । ପୃଥିବୀର ସର୍ବାଧିକ ଚାଲାକ, ଚତୁର, ନିଜକୁ ସର୍ବବଳୀୟାନ ଭାବୁଥିବା ବୈଜ୍ଞାନିକ ମଣିଷ ନିକଟରେ ସତେ ଯେପରି ଏହି ପ୍ରଳୟରୁ ପୃଥିବୀକୁ ରକ୍ଷାକରିବାକୁ କୌଣସି ବାଟ ନଥିଲା । ଡେଭିଡ୍‌ଙ୍କ ଆଖି ଆଗରେ ଭାସି ଉଠୁଥିଲା ସେହି ପ୍ରଳୟର ଚିତ୍ର । ଧୂମକେତୁ ଖୁବ୍ ବେଗରେ ଆସି ମାଡହେବ ପୃଥିବୀ ଦେହରେ । ଠିକ୍ ଏକ ବନ୍ଧୁକରୁ ବିସ୍ଫୋରିତ ଗୋଳାପରି ଆଉ ପର ମୂହୁର୍ତ୍ତରେ ସୁନ୍ଦର ସବୁଜ ପୃଥିବୀରେ ସୃଷ୍ଟିହେବ ପ୍ରଚଣ୍ଡ ବିସ୍ଫୋରଣ, ସମୁଦ୍ରର ଉତ୍ତଳ ଜଳରାଶୀ ଶହ ଶହ ମାଇଲ ମହାକାଶକୁ ଉଠିଯାଇ ପ୍ରଚଣ୍ଡ ବିଭୀଷିକା ସୃଷ୍ଟି କରିବ । ଏହି ସଂଘର୍ଷ ସହିତ ପୃଥିବୀରଗର୍ଭରୁ ପଦାକୁ ବାହାରିଆସି ଉତ୍ତପ୍ତ ଲାଭା ପ୍ରଚଣ୍ଡଭାବେ । ପୃଥିବୀର ସବୁଆଡେ ସୃଷ୍ଟିହେବ ଆତଙ୍କଜନକ ଭୂକମ୍ପ ଆଉ ଭାଙ୍ଗିପଡିବ ସବୁ କୋଠାବାଡି, ସବୁକିଛି । ଭୂଭାଗ ଉପରେ ଗଦା ହୋଇଯିବ ମାଇଲ ମାଇଲ ଉଚ୍ଚର କାଦୁଅ, ପଙ୍କ, ଫୁଟନ୍ତା ଲାଭା । ତରଳ ଅବସ୍ଥାରେ ଫୁଟୁଥିବା ଲାଭା ଓ ବିଷାକ୍ତ ବାଷ୍ପ ଚାରିଆଡେ ମାଡିଯିବ । ବିସ୍ଫୋରଣରୁ ଏତେ ଶକ୍ତି ସୃଷ୍ଟିହେବ ଯେ ଏହାର ପ୍ରଚଣ୍ଡ ଶବ୍ଦରେ ତଥା ଶକ୍ତିରେ ପୃଥିବୀର ସମସ୍ତ ପ୍ରାଣୀ ମାତ୍ର କେତେ ସେକେଣ୍ଡରେ ମରିଯିବେ । ଏକ ବିରାଟ ଅଞ୍ଚଳର ଭୂଭାଗ ଆକାଶକୁ ଉଠିଯିବ । ଏହି ପ୍ରଳୟ ବିଷୟରେ ଆଉ ଚିନ୍ତା କରିପାରୁ ନଥିଲେ ଡେଭିଡ୍ । ନିଜକୁ ବିଜ୍ଞାନୀ ଶ୍ରେଷ୍ଠ ଜୀବଭାବେ ବିବେଚନା କରୁଥିବା ଅସହାୟ ମାନବ ସୁଅ ମୁହଁରେ ପତର ପରି କେଉଁ ଆଡେ ନିଶ୍ଚିହ୍ନ ହୋଇଯିବ ତାର ପତ୍ତା ମିଳିବ ନାହିଁ । ସୁନ୍ଦର, ସବୁଜ, କୋଳାହଳମୟ ପୃଥିବୀ ମାତ୍ର କେତେ ସେକେଣ୍ଡ

ଭିତରେ ଏକ ମୃତ, ନିର୍ଜୀବ, ଶୁଷ୍କ ଗ୍ରହରେ କଣ ପରିଣତ ହୋଇଯିବ ? ନାଁ, ସେ ଆଉ ଚିନ୍ତା କରିପାରୁ ନଥିଲେ । ଏହି ବୃହତ୍ତ ମହାକାଶ ଦାନବ କବଳରୁ ପୃଥିବୀକୁ ରକ୍ଷା କରିବାର ଆଉ ଯେପରି କୌଣସି ଉପାୟ ନାହିଁ । କାହିଁ କୋଟି କୋଟି ମାଇଲ ଲମ୍ବର ବିଶାଳ ଧୂମକେତୁ ଆଉ କାହିଁ କ୍ଷୁଦ୍ର ପୃଥିବୀ । ଦୀର୍ଘ ନିଶ୍ୱାସ ଛାଡି କମ୍ପ୍ୟୁଟରର ସୁଇଚ୍ ବନ୍ଦ କରୁଥିଲେ ଡେଭିଡ୍ । ତାଙ୍କୁ ଏହି ଦୁଃସମ୍ବାଦ ପୃଥିବୀର ସମସ୍ତ ବୈଜ୍ଞାନିକମାନଙ୍କୁ ଯେତେଶୀଘ୍ର ସମ୍ଭବ ଜଣାଇଦେବାକୁ ହେବ । ଆଉ ହାତରେ ବା କେତେଟା ମାସ..... ତା' ପରେ କେବଳ ଧ୍ୱଂସ ଆଉ ଧ୍ୱଂସ । ହୁଏତ ଏଇ କେତେଦିନ ପୃଥିବୀର ମାନବ ସମାଜ ସେମାନଙ୍କର ଶେଷ ଐଶ୍ୱର୍ଯ୍ୟ ଉପଭୋଗ କରିବାର ସୁଯୋଗ ଲାଭ କରନ୍ତୁ । ହୁଏତ ଡାଇନୋସର ଭଳି ଏହି ବିସ୍ଫୋରଣ ପରେ ପରେ ମାନବ ସମାଜର ସ୍ଥିତି ବିଲୁପ୍ତ ହୋଇଯିବ ପୃଥିବୀ ପୃଷ୍ଠରୁ । ଆଜି ଯାଏ ସାରା ବିଶ୍ୱବ୍ରହ୍ମାଣ୍ଡରେ ଜୀବଜଗତ ତିଷ୍ଠି ରହିଥିବା ଏକମାତ୍ର ଗ୍ରହ ପୃଥିବୀ ଜୀବଜନ୍ତୁ ଶୂନ୍ୟ ହୋଇଯିବ । ତେବେ ଏହି ଦୁଃଖଦ ସମ୍ବାଦ ପୃଥିବୀର ଅନ୍ୟ ଗବେଷଣା କେନ୍ଦ୍ରମାନଙ୍କୁ ଜଣାଇଦେବା ପୂର୍ବରୁ ଧୂମକେତୁର ବେଗ ଓ ପୃଥିବୀ ସହ ସଂଘର୍ଷ ତାରିଖ ନିର୍ଣ୍ଣୟ କରିବାକୁ ନିର୍ଦ୍ଦେଶ ଦେଲେ ଡେଭିଡ୍ ।



# ମିନିଟ୍‌କୁ ବେଗ ୬୦ ହଜାର ମାଇଲ



ଧୂମକେତୁର ବେଗ ନିର୍ଦ୍ଧାରଣ କରିବାର ଦାୟିତ୍ୱ ଥିଲା ବୈଜ୍ଞାନିକ ଜ୍ୟାକସନ ଓ ସାଥୀ ମାନଙ୍କ ଉପରେ । ଇତିମଧ୍ୟରେ ପୃଥିବୀର ସବୁ ବଡବଡ ଗବେଷଣା କେନ୍ଦ୍ର ଓ ମାନମନ୍ଦିର ଏହି ଭୟାବହ ବିପତ୍ତି ବିଷୟରେ ଅବଗତ ହୋଇପାରି ଥିଲେ । ସବୁଆଡେ ସତେଯେପରି ଖେଳିଯାଇଥିଲା ଏକ ଅଜଣା ଆତଙ୍କ, ଅସହାୟ ଅବସ୍ଥା ।

ଏହି ନିଶ୍ଚିତ ମୃତ୍ୟୁ ଘଣ୍ଟିରୁ ବର୍ତ୍ତିବାର ଯେପରି କୌଣସି ବାଟ ନଥିଲା । ଜ୍ୟାକସନ ପ୍ରମୁଖ ଅସହାୟ ହୋଇପଡିଲେ ମଧ୍ୟ, ଲାଗିଥିଲେ ଗବେଷଣା କାର୍ଯ୍ୟରେ । କୋଟିକୋଟି କିଲୋମିଟର ଲମ୍ବର ଏହି ଧୂମକେତୁ ଏବେ ପୃଥିବୀ ଆକାଶରେ ଉଦୟ ହେଲାଣି । ଏହା ଭିତରେ ଅନେକ ଗୁରୁତ୍ୱପୂର୍ଣ୍ଣ ବୈଠକ ବହୁବାର ପୃଥିବୀର ବିଭିନ୍ନ ସ୍ଥାନରେ ହୋଇସାରିଛି । ଯେତେ ବଛାବଛା ଜ୍ୟୋତିର୍ବିଜ୍ଞାନୀ, ବ୍ରହ୍ମାଣ୍ଡବିଜ୍ଞାନୀ ଏହିସବୁ ବୈଠକରେ ବାରମ୍ବାର ଯୋଗଦେଇଛନ୍ତି ସତ କିନ୍ତୁ ଏହି ମହାବିପତ୍ତିରୁ କିପରି ରକ୍ଷା ମିଳିବ ସେଥିନେଇ କୌଣସି ନିର୍ଦ୍ଦିଷ୍ଟ ନିଷ୍ପତ୍ତି ଗ୍ରହଣ କରିପାରି ନାହାଁନ୍ତି । ସମସ୍ତେ ଯେପରି କ୍ରମେ ଅସହାୟ ହୋଇପଡୁଛନ୍ତି । ୩୬୦ ନିୟୁତ ବର୍ଷ ତଳେ ସେତେବେଳକାର ପୃଥିବୀର ବୃହତ୍ ବାସିନ୍ଦା ଡାଇନୋସର ଆକାରରେ ଯେତେ ବିଶାଳ ହେଲେ ମଧ୍ୟ ମଣିଷପରି ତ ଚାଲାଖ, ଚତୁର ନଥିଲା ତେଣୁ ସେ ହୁଏତ ମୃତ୍ୟୁର ପୂର୍ବ କେତେ ସେକେଣ୍ଡ ଯାଏ ପୃଥିବୀ ଉପରେ ଯେ ଏପରି ଧୂମକେତୁ ବା ଗ୍ରହାଣୁ ମାଡ ଯୋଗୁ ବିସ୍ଫୋରିକ ଅବସ୍ଥା ସୃଷ୍ଟି ହେଉଛି ତାହା ଜାଣିପାରି ନଥିବ ଏବଂ ହଠାତ୍ ପରିବର୍ତ୍ତିତ ପରିସ୍ଥିତିରେ ସମୂଳେ ମୃତ୍ୟୁବରଣ କରି ହୁଏତ ନିଶ୍ଚିହ୍ନ ହୋଇଯାଇଥିବ । ମାତ୍ର ଏବେକାର ବିଜ୍ଞାନୀ ମାନବ ଯେ କି ପୃଥିବୀର ସମସ୍ତ ବିସ୍ମୟକୁ ଜୟକରି ଆକାଶ ଜୟ କରିବାକୁ ଆଗେଇଛି ତା'ର ମୃତ୍ୟୁ ଏପରି ଅସହାୟଭାବେ ହେବାକୁ କ'ଣ ବୈଜ୍ଞାନିକ ମାନବ ବରଦାସ୍ତ କରିପାରିବ ? ମାତ୍ର ଏକ ବିଶାଳ ଆଲୋକପିଣ୍ଡ ନିକଟରେ ଏକ କ୍ଷୁଦ୍ର ଡିବିରୀ ଆଲୋକର ସ୍ଥିତି କ'ଣ ? ତେବେ ନିଜକୁ ସର୍ବବଳଶାଳୀ, ସର୍ବବୁଦ୍ଧିମାନ, ସର୍ବଶ୍ରେଷ୍ଠ ଜୀବ ରୂପେ ଭାବି ଆସିଥିବା ମାନବ ବଂଶର ବିନାଶ କଣ ଏପରି ଅସହାୟ ଭାବେ ହେବ । କୌଣସି ବୈଜ୍ଞାନିକଙ୍କ ମନରେ ଏହି ସମସ୍ୟାର ସମାଧାନ ସୂତ୍ର ପଶୁନଥିଲା ।

ଗତ ଏକମାସ ହେବ ଡେଭିଡ୍ ନିରୁଦ୍ଧିଷ୍ଟ ଥିଲେ । ସେ ଓ ପତ୍ନୀ ରୋଜି କାହାକୁ କିଛି ନ କହି ଏତେଦିନ ଧରି କିଙ୍ଗଷ୍ଟୋନ ମାନମନ୍ଦିରରୁ ଅନୁପସ୍ଥିତ ରହିବା ନେଇ ସମସ୍ତଙ୍କ ମନରେ ବିଷାଦ ଖେଳିଯାଇଥିଲା ।

ଆଫ୍ରିକାର ଭିକ୍ଟୋରିଆ ଜଳପ୍ରପାତ । ପ୍ରପାତ କଡରେ ଏକ ପର୍ଯ୍ୟଟନ ହୋଟେଲରେ ବସିଥିଲେ ଡେଭିଡ୍ । ଜଳପ୍ରପାତ ଆଡକୁ ହାତବଢ଼ାଇ ସେ କହୁଥିଲେ ଦେଖ ରୋଜି । ଏହି ଜଳ ପ୍ରପାତର ଭୀମ ପ୍ରଚଣ୍ଡ ଜଳଧାରା କିପରି ଖସିପଡୁଛି

ଖାଲୁଆ ଭୂପୃଷ୍ଠ ଉପରକୁ । କେତେ ଭୀମ, ଭୟଙ୍କର ସତେ ଏହାର ଗର୍ଜନ । ମାତ୍ର ଆଉ କିଛିଦିନ ପରେ ଏହି ପ୍ରାକୃତିକ ଶୋଭା ଉଭେଇଯିବ ସବୁଦିନ ପାଇଁ ପୃଥିବୀ ବକ୍ଷରୁ । କେତେ ସୁନ୍ଦର ସତେ ଆମର ଏହି ବାସସ୍ଥଳୀ ପ୍ରକୃତିର ଲୀଳାକ୍ଷେତ୍ର ସବୁଜ ସୁନ୍ଦର ପୃଥିବୀ । ମାତ୍ର ହାୟ ! ଆମେ ଅସହାୟ ମାନବ ଏପରି ପୃଥିବୀକୁ ଯେ ରକ୍ଷା କରିପାରିବା ନାହିଁ ଏହାଠାରୁ ବଳି ଆଉ ଦୁଃଖର କଥା କଣ ଅଛି ? ମୋତେ ଏକୁଟିଆ ଛାଡିଦିଅ ରୋଜି । ଯଦି ମୁଁ ପୃଥିବୀକୁ ଧୂମକେତୁ ମୁହଁରୁ ବଞ୍ଚାଇ ପାରିବି ନାହିଁ ତେବେ ଏହି ମୁହଁ ଆଉ ପୃଥିବୀବାସୀଙ୍କୁ ଦେଖାଇବାକୁ ବଞ୍ଚିରହି ଲାଭ କଣ ? ତୁମେ ଏତେ ଅସହାୟ ହୋଇପଡୁଛି ଡେଭି । ପାଖକୁ ଲାଗିଯାଇ ଡେଭିଙ୍କ ପକ୍ୱ କେଶରାଜିକୁ ଆଉଁସି ଦେଉଦେଉ ରୋଜି କହୁଥିଲେ । ବର୍ତ୍ତମାନ ନିରାଶ ହେବାର ବେଳ ନୁହେଁ । ତୁମ ଭଳି ଜଣେ ବରିଷ୍ଠ, ବିଶେଷଜ୍ଞଙ୍କୁ ମୁଁ ବା କ'ଣ ବୁଝାଇବି । ଆମକୁ ଶେଷ ଚେଷ୍ଟା କରିବାକୁ ହେବ ପୃଥିବୀକୁ ବଞ୍ଚାଇବାକୁ ନଚେତ ସମସ୍ତେ ତ ମରିବା । କାର୍ଯ୍ୟକରି ବୀର ଭଳି ମରିବାର ଯେଉଁ ଆନନ୍ଦ, ଅସହାୟଭାବେ କାପୁରୁଷ ପରି ମରିବାରେ କଣ କିଛି ମୂଲ୍ୟ ଅଛି ? ରୋଜିଙ୍କ ମୁହଁରୁ ଏଇ କେତେପଦ କଥା ଶୁଣୁ ଶୁଣୁ ସତେ ଯେପରି ଡେଭିଡ୍‌ଙ୍କ ଦେହରେଁ ବିଦ୍ୟୁତ୍ ତରଙ୍ଗ ଖେଳିଗଲା । ବେଳେବେଳେ ମଧ ବିଶେଷଜ୍ଞ, ଜ୍ଞାନୀମାନୀ ମାନବ ସେ ଯେତେ ବିଜ୍ଞ ହୋଇଥାଉ ପଛେ ତା' ନିକଟରେ ଏହିଭଳି ପିଲାଳିଆ ପାଗଳାମି ଦେଖାଦିଏ । ଡେଭିଡ୍‌ଙ୍କୁ ସତେ ଯେପରି ନୂତନ ପ୍ରେରଣା ମିଳିଲା । ଏକୁଟିଆ ସମାଧାନର ସୂତ୍ର ପ୍ରସ୍ତୁତ କରିବାକୁ କାହାକୁ କିଛି ନକହି ଆଫ୍ରିକାର ଗୋଟିଏ ମୁଣ୍ଡରୁ ଅନ୍ୟ ମୁଣ୍ଡକୁ ଚାଲିଆସିଥିବା ଡେଭିଡ୍ ଚଞ୍ଚଳ ହୋଇଉଠିଲେ । କାଲି ସକାଳୁ ହିଁ ସେମାନଙ୍କୁ ଫେରିଯିବାକୁ ହେବ ଗବେଷଣା କେନ୍ଦ୍ର ନିକଟକୁ । ଆଉ ସମୟ ନାହିଁ । ହାତରେ ଆଉ ବର୍ଷଟିଏ ବୋଧହୁଏ ସମୟ । ଏହାପରେ ଉପସ୍ଥିତ ହେବ ସେହି ବିସ୍ଫୋରକ ଦିନ । ଉଠ ରୋଜି ! କାଲି ସକାଳୁ ଫେରନ୍ତା ଯାତ୍ରା ପାଇଁ ପ୍ରସ୍ତୁତ ହୁଅ । ମୁଁ ଶପଥ କରୁଛି ଆଉ ଅସହାୟଭରା କଥା ମୋ ମୁହଁରୁ ଶୁଣିବନି ରୋଜି । ଆମେ ସଂଗ୍ରାହ କରିବା, ହୁଏତ ଜୟ ବା ପରାଜୟ..... ମୃତ୍ୟୁ ।

କିଙ୍ଗଷ୍ଟୋନ ମାନମନ୍ଦିରରେ କାର୍ଯ୍ୟରତ ବୈଜ୍ଞାନିକଗଣ ଆଜି ସତେ ଯେପରି ନୂତନ ଡେଭିଡ୍‌ଙ୍କୁ ଦେଖୁଛନ୍ତି । ତାଙ୍କ ମନରେ ବିଷାଦର ତିଳେମାତ୍ର ଲକ୍ଷଣ ନାହିଁ ।

ଏତେଦିନ ପରେ ସେମାନେ ଡେଭିଡ୍‌ଙ୍କୁ ଦେଖି ନୂତନ ପ୍ରେରଣା ପାଇଛନ୍ତି । ଧୂମକେତୁର ବେଗ ନିର୍ଦ୍ଧାରିତ ହୋଇସାରିଲାଣି । ଏହି ଧୂମକେତୁ ମିନିଟ୍‌କୁ ୬୦ ହଜାର ମାଇଲରୁ ଅଧିକ ବେଗରେ ଦିନରାତ୍ରି ମାଡି ଆସୁଛି ପୃଥିବୀ ଆଡେ । ଆଲବର୍ଟ ଧୂମକେତୁର ବେଗ ବିଷୟରେ ତଥ୍ୟ ପ୍ରଦାନ କରିସାରିଥିଲେ ଡେଭିଡ୍‌ଙ୍କୁ । ରବର୍ଟ ଓ ବିଶ୍ୱର ଅନ୍ୟ ସମସ୍ତ ବୈଜ୍ଞାନିକମାନେ ଉଲ୍ଲସିତ ହୋଇଥିଲେ ଡେଭିଡ୍‌ଙ୍କ ଫେରିବା ବାର୍ତ୍ତାପାଇ । ବର୍ତ୍ତମାନ ସମସ୍ତ ବୈଜ୍ଞାନିକଙ୍କ ଆଗରେ ଏକ ଶ୍ରେଷ୍ଠ ଚ୍ୟାଲେଞ୍ଜ । ଏତେବେଳେ ଆଉ ଡରିଯିବାର, ପଛଘୁଞ୍ଚା ଦେବାର ପ୍ରଶ୍ନ ଉଠୁ ନାହିଁ । ସମସ୍ତଙ୍କୁ ଆଗେଇବାକୁ ହେବ ଏକ ନୂତନ ଦିଗଦର୍ଶନ ନେଇ ସାହସର ସହିତ । ଘଣ୍ଟାରେ ଅପରାହ୍ନ ୪ଟା ବାଜିବାର ଉପକ୍ରମ । ସେନିଗାଲ ମରୁଭୂମିରେ ବୋଧହୁଏ ଉଠିଲାଣି ଏକ ପ୍ରଚଣ୍ଡ ଧୂଳିଝଡ଼ । ଗବେଷଣାଗାରର ସ୍ୱଚ୍ଛ କାଚ ବାତାୟନ ଦେଇ ମରୁଝଡ଼ର ତୀବ୍ରତା ଅନୁମାନ କରୁଥିଲେ ଡେଭିଡ୍ ଓ ଅନ୍ୟ ଗବେଷକମାନେ । ଚାରିଆଡେ ଧୂଳିର ପଟଳ । ପ୍ରକୃତି ସତେ କେତେ ଉଗ୍ର ! ପ୍ରକୃତିର ଭୀଷଣ ରୂପ ଆଗରେ ମାନବ କେତେ ଅସହାୟ ସତେ ? ଗବେଷଣାଗାର ଭିତରେ ସୁରକ୍ଷିତ ରହି ବୈଜ୍ଞାନିକମାନେ ସ୍ୱଚ୍ଛକାଚ ପରଦାରେ ପ୍ରକୃତିର ତାଣ୍ଡବଲୀଳା ଦେଖି ମନେ ମନେ କଳନା କରି ଚାଲିଥିଲେ ପ୍ରକୃତିର କରାଳ ରୂପକୁ ।



# ବିଶ୍ୱର ସମସ୍ତ ମାନବ ଏକ

ବିଶ୍ୱବାସୀଙ୍କୁ ଏବେ ଆସୁଥିବା ବିପତ୍ତି ବିଷୟରେ ଜଣାଇଦେବାକୁ ପଡିବ । ଏହିଭଳି ଭୟଙ୍କର ବିପଦ ବିଷୟରେ ସମ୍ପୂର୍ଣ୍ଣରୂପେ ନଜଣାଇ ଆଂଶିକ ଭାବେ ତଥ୍ୟ ପ୍ରଚାର ପାଇଁ ବିଶ୍ୱର ଆମେରିକା ସମେତ ଋଷ, ଜର୍ମାନୀ ଓ ଅନ୍ୟ କେତେକ ଦେଶର ରାଷ୍ଟ୍ରପତିମାନେ ପରାମର୍ଶ ଦେଇଥିଲେ ବୈଜ୍ଞାନିକମାନଙ୍କୁ । ସେହି ଅନୁସାରେ ଏକ ସାମ୍ବାଦିକ ସମ୍ମିଳନୀରେ ସ୍ୱୟଂ ଏହି ଧୂମକେତୁର ଆବିଷ୍କାରକ ଡେଭିଡ୍ ଧୂମକେତୁର ପୃଥିବୀ ସହିତ ସଂଘର୍ଷ ଘଟିବାର ସମ୍ଭାବନା ବିଷୟରେ ମାତ୍ର ଗୋଟିଏ ପଦ କଥା କହି ଉଠି ଆସିଥିଲେ । ତାହା ଥିଲା ''ପୃଥିବୀ ସହିତ ଡେଭିଡ୍ ଧୂମକେତୁର ସଂଘର୍ଷ ସମ୍ଭାବନା ରହିଛି ଏବଂ ଏହି ବିପତ୍ତି କିଭଳି ନ ଘଟିବ ସେଥିପାଇଁ ଉଦ୍ୟମ ଚାଲୁରହିଛି ।'' ଏହି ଗୋଟିଏ ପଦ ଶୁଣିବାପରେ ସାମ୍ବାଦିକମାନଙ୍କର ବିଶ୍ଳେଷଣାତ୍ମକ ପ୍ରଶ୍ନର ଉତ୍ତର ଦେବାକୁ ସେଠାରେ ଆଉ ଡେଭିଡ୍ ଉପସ୍ଥିତ ନଥିଲେ ମଧ୍ୟ ପରଦିନ ବିଶ୍ୱର ଅନେକ ସମ୍ବାଦପତ୍ରରେ ସାମ୍ବାଦିକମାନଙ୍କ ଦ୍ୱାରା ବିସ୍ତାରିତ ଭାବେ ଏହି ସମ୍ବାଦ ପ୍ରକାଶ ପାଇଥିଲା । ହାତରେ ମଧ୍ୟ ଆଉ ବେଶୀଦିନ ସମୟ ନାହିଁ । ବୋଧହୁଏ ଆଉ ୧୦ମାସ ବାକୀ ରହିଲା । ଏହି ସମ୍ବାଦ ପ୍ରକାଶ ପାଇବାପରେ ସାରା ବିଶ୍ୱରେ ଏକ ପ୍ରକାର ଚହଳ ପଡିଗଲା । କଣ ହେବ ପୃଥିବୀର ଭବିଷ୍ୟତ । ଯେଉଁଆଡେ ଦେଖିଲେ କେବଳ ସେହି ଗୋଟିଏ ଆଲୋଚନା, ସବୁଆଡେ ଆଲୋଡନ । କିନ୍ତୁ ପୃଥିବୀର ଅର୍ଦ୍ଧାଧିକ ଗରିବ, ଗାଉଁଲୀ ଲୋକ ଏ ପ୍ରକାର ବିପତ୍ତି ବିଷୟରେ ସେତେବେଳେଯାଏ ଜାଣିବାରେ ଅକ୍ଷମ । ଲଞ୍ଜାତାରା ଆକାଶରେ ଦେଖାଦେଲେ ପୃଥିବୀକୁ ବିପତ୍ତି ମାଡିଆସେ ବୋଲି ହିଁ ସେମାନଙ୍କର ବଦ୍ଧମୂଳ ଧାରଣା ରହିଆସିଛି । କିନ୍ତୁ ଅନ୍ୟ ଧୂମକେତୁ ପରି ନହୋଇ ଏହି ଧୂମକେତୁ ଯେ ନିଜେ ପ୍ରଳୟକୁ ନିଜ ସହିତ ଧରି ପୃଥିବୀ ମୁହାଁ ଆସୁଛି ଏହା ଜାଣିବାପରେ ଅନେକ ଆତଙ୍କିତ ହୋଇପଡିଲେଣି । ଏବେ ପୃଥିବୀରେ ଦେଖାଦେଲାଣି ଏକ ଭୟଙ୍କର ଅବସ୍ଥା । ଯେଉଁଆଡେ ଦେଖ ଆଲୋଚନା । ସବୁଆଡେ କାମ ବନ୍ଦ, ବିଷର୍ଣ୍ଣ ବଦନରେ ଲୋକେ ମୃତ୍ୟୁକୁ ଅପେକ୍ଷାକରିବାକୁ ପ୍ରସ୍ତୁତ ହେବାପରି ବାତାବରଣ ସୃଷ୍ଟି ହେଲାଣି

ସବୁଆଡେ । ଏହି ସମସ୍ୟାରୁ ବର୍ତ୍ତିବାପାଇଁ ସାରା ବିଶ୍ୱରେ ଏମରଜେନ୍ସି ଜାରୀ କରାଯିବାକୁ ଘୋଷଣା କରାଗଲାଣି । ବିପଦ ଯେତେବେଳେ ପୃଥିବୀ ଉପରକୁ ଆସୁଛି ସେତେବେଳେ ଆଉ ଦେଶଦେଶ ଭିତରେ ରହି ଆସିଥିବା ବିଭେଦ, ବିଦ୍ୱେଷ ଓ ଶତ୍ରୁତାର ମୂଲ୍ୟ କ'ଣ ? ବର୍ତ୍ତମାନ ସମସ୍ତେ ଏକ, ସମସ୍ତେ ଗୋଟିଏ ପୃଥିବୀର ମାନବ ସମାଜ ସବୁ ଧର୍ମ ଏକ ଧର୍ମ ତାହା - ମାନବ ଧର୍ମ । ଈଶ୍ୱର, ଆଲ୍ଲା, ଯିଶୁ ସମସ୍ତେ ଏକ । ନଈ ବଢ଼ିରେ ଭାସିଯାଉଥିବା ଏକ ଶୁଖିଲା କାଠ ଉପରେ ଅସହାୟଭାବେ ସବୁବେଳେ ମୃତ୍ୟୁର ରୂପ ଦେଖୁଥିବା ସାପ ଓ ବେଙ୍ଗ ନିଜ ନିଜ ଭିତରେ ଶତ୍ରୁତା ଭୁଲିଯିବା ଭଳି ଏବେ ସାରା ପୃଥିବୀର ମାନବ ସମାଜ ଏକ ହୋଇଯାଇଛି । ସତେ ଯେପରି ଏକ ନୂତନ ଆନ୍ଦୋଳନ ସୃଷ୍ଟି ହୋଇଛି ପୃଥିବୀରେ ଏହାକୁ ବଞ୍ଚାଇ ରଖିବାର ସଂକଳ୍ପନେଇ ।

ଆମେରିକାର ରାଷ୍ଟ୍ରପତିଙ୍କ ଅଧ୍ୟକ୍ଷତାରେ "ପୃଥିବୀ ରକ୍ଷା କାର୍ଯ୍ୟକ୍ରମ" ଶୀର୍ଷକ ଏକ ମଣ୍ଡଳୀ ଗଠିତ ହୋଇଛି । ପ୍ରତ୍ୟେକ ଦିନ ଏହି ସଙ୍ଗଠନର ବୈଠକ ଅପରାହ୍ଣ ୪ଟାରେ ବସି ଧୂମକେତୁର ଅବସ୍ଥିତ ଓ ଏହାକୁ ପ୍ରତିରୋଧ କରାଯିବାର ବ୍ୟବସ୍ଥା ସଂପର୍କରେ ଆଲୋଚ଼ନା କରାଯାଉଛି । ପୃଥିବୀର ଲୋକମାନଙ୍କୁ ସଂଯମ ଆଚ଼ରଣ ସହ ଧୀରସ୍ଥିର ଭାବେ ଆଚ଼ରଣ କରିବାକୁ ନିର୍ଦ୍ଦେଶ ଦିଆଯାଇଛି । କୌଣସି ପ୍ରକାର ଅସ୍ଥିର, ଅସହାୟ ନହୋଇ ସବୁ କାର୍ଯ୍ୟକ୍ରମ ଠିକ ରୂପେ କରିବାକୁ ମଧ୍ୟ ନିର୍ଦ୍ଦେଶ ଦିଆଯାଇଛି । କିନ୍ତୁ ଇତି ମଧ୍ୟରେ ଏକ ସ୍ୱତନ୍ତ୍ର ଘୋଷଣାମାନ ଦ୍ୱାରା ପୃଥିବୀର ଯେ କୌଣସି ସ୍ଥାନରେ ଯାହା କିଛି ନିର୍ମାଣକାର୍ଯ୍ୟ ଚାଲିଛି ତାହାକୁ ବନ୍ଦ କରିବାକୁ ନିର୍ଦ୍ଦେଶ ଦିଆଯାଇଛି । ଏଥିପାଇଁ ବିନିଯୋଗ ହେଉଥିବା ଅର୍ଥ ସବୁଦେଶ ତୁରନ୍ତ ପୃଥିବୀ ରକ୍ଷା ସଙ୍ଗଠନକୁ ପଠାଇବାକୁ ଓ ସବୁଦେଶର ବୈଜ୍ଞାନିକମାନେ ଦରକାରହେଲେ ଦେଶର ଗବେଷଣା କେନ୍ଦ୍ରଗୁଡ଼ିକୁ ଏହି ସଂଗଠନ ପାଇଁ କାର୍ଯ୍ୟକରିବାକୁ ନିର୍ଦ୍ଦେଶ ଦିଆଯାଇଛି । ପେଟ୍ରୋଲ, ଡିଜେଲ ଓ ଜାଳେଣି ବ୍ୟବହାର ଉପରେ ସଂଯମତା ଆଚ଼ରଣ କରାଯିବା ସହ ସମସ୍ତ ପରମାଣୁ ଅସ୍ତ୍ରଶସ୍ତ୍ର ଓ ପରମାଣୁ ସମ୍ପନ୍ନ ପଦାର୍ଥକୁ ଖର୍ଚ୍ଚ ନ କରିବାକୁ ମଧ୍ୟ ସ୍ୱତନ୍ତ୍ର ନିର୍ଦ୍ଦେଶ ଦିଆଯାଇଛି । ସାରା ବିଶ୍ୱରେ ଏହି କେତେଦିନ ଭିତରେ ସୃଷ୍ଟି ହୋଇଛି ଏକ ନୂତନ ଆନ୍ଦୋଳନ । ସମସ୍ତ ସରକାରୀ, ବେସରକାରୀ, ସମାଜସେବୀ ସଂସ୍ଥାମାନଙ୍କୁ ଇତିମଧ୍ୟରେ ସ୍ୱତନ୍ତ୍ର ନିର୍ଦ୍ଦେଶ ଦିଆଯାଇଛି । ଏସବୁ କର୍ମଚାରୀମାନେ ଗାଁ ଗହଳିକୁ ଯାଇ ଲୋକଙ୍କ ମଧ୍ୟରେ ଆତଙ୍କିତ ନ ହେବାର ବାର୍ତ୍ତା

ପ୍ରଚାର ସହ ସଚେତନତା ସୃଷ୍ଟିପାଇଁ କୁହାଯାଇଛି । ଗାଁ ଗହଳିରେ ଆନେକ ସ୍ଥାନରେ ଏହି ବିପତ୍ତିରୁ ରକ୍ଷାପାଇବା ପାଇଁ ଇତିମଧ୍ୟରେ ପୂଜା ଅର୍ଚ୍ଚନା ଆରମ୍ଭ ହୋଇଗଲାଣି । ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ, ଇହୁଦୀ, ବୈଦ୍ଧ, ଜୈନ ସମସ୍ତେ ଆଜି ପ୍ରଥମେ ମଣିଷ । ସମସ୍ତଙ୍କ ଦେବତା ଏକ ଈଶ୍ୱର । ସମସ୍ତ ଦେବପୀଠରେ ଆଜି ଗୋଟିଏ ପ୍ରାର୍ଥନା ହେ ଭଗବାନ, ହେ ଆଲ୍ଲା, ହେ ଈଶ୍ୱର, ହେ ବୁଦ୍ଧ, ହେ ମହାବୀର ହେ ଯୀଶୁ ତୁମେ ଏହି ସୁନ୍ଦର ପୃଥିବୀକୁ ରକ୍ଷାକର ।



# ଧୂମକେତୁର ଆବିର୍ଭାବ

ପୃଥିବୀ ଆକାଶରେ କ୍ରମେ ଦୃଷ୍ଟିଗୋଚର ହେଲାଣି ପ୍ରଳୟର ଅନ୍ୟନାମ ଧୂମକେତୁ । କିଛିଦିନ ତଳେ ଏକ କ୍ଷୁଦ୍ର ନକ୍ଷତ୍ର ପରି ଦେଖାଯାଉଥିବା ଏହି ଧୂମକେତୁ କ୍ରମେ ବୃଦ୍ଧିପାଇ ଉଜ୍ଜ୍ୱଳ ହୋଇଉଠିଲାଣି । ଏହାର ନାରଙ୍ଗୀ ଜ୍ୱଳନ୍ତ ଶରୀର ମଧ୍ୟ ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ କ୍ରମେ ବିସ୍ତାରିତ ହୋଇ ଉଠିଲାଣି । ଡେଭିଡ୍ ହିସାବ କରୁଥିଲେ ପୃଥିବୀ ଓ ଧୂମକେତୁ ମଧ୍ୟରେ ବ୍ୟବଧାନ ଆଉ ୬ମାସ । ଏହାପରେ ସଂଘର୍ଷର ଦିବସ । ସଂଘର୍ଷ ତାରିଖ ମଧ୍ୟ ଘୋଷଣା କରାଯାଇସାରିଲାଣି । ଏହା



ହେଉଛି ମାର୍ଚ୍ଚମାସ ୧୦ ତାରିଖ । ଅବଶ୍ୟ ଏହି ତାରିଖ ସାଧାରଣ ଜନତାଙ୍କୁ ଜଣାଇ ଦିଅଯାଇ ନାହିଁ । ଦିନରାତି ଏବେ ପ୍ରତ୍ୟେକ ମୂହୁର୍ତ୍ତରେ ସାରା ବିଶ୍ୱରେ ଚାଲିଛି ଗୋଟିଏ ଗବେଷଣା ତାହା ହେଲା ଏହି ଧୂମକେତୁ କବଳରୁ ପୃଥିବୀକୁ ରକ୍ଷାକରିବାର ଗବେଷଣା । ହଜାର ହଜାର ମାଇଲ ଲମ୍ବା ହୋଇଥିଲେ ମଧ ପୃଥିବୀବାସୀ ଖାଲି ଆଖିରେ ଏହି ଧୂମକେତୁର ବିଶାଳ ଶରୀରକୁ ଆଜିଯାଏ ସଂପୂର୍ଣ୍ଣରୂପେ ଦେଖି ନ ପାରି ହୁଏତ ଆହ୍ଲାଦିତ ହେଉଛନ୍ତି କିନ୍ତୁ ବୈଜ୍ଞାନିକମାନେ ଏହାର ବିଶାଳ ଶରୀରର ପ୍ରତ୍ୟେକ କୋଣ ଅନୁକୋଣକୁ ବିଶ୍ଳେଷଣ କରିବାରେ ଲାଗିଲେଣି । ସୂର୍ଯ୍ୟ ତାପରେ ଏହାର କ୍ରମ ବିସ୍ତାରିତ ଶରୀରର ଲମ୍ବା ପୁଛ ଭିତରେ ରହିଛି ଅନେକ ହିମାଳୟ ପର୍ବତମାଳାଠାରୁ ବୃହତ୍ତ ପ୍ରସ୍ତରଖଣ୍ଡ ଓ ବିଶାଳ ଖଣ୍ଡ ବିଖଣ୍ଡିତ କଠିନ ପଦାର୍ଥ । ଏହାର ମୁଣ୍ଡ ପୁଣି ଅତ୍ୟନ୍ତ ବୃହତ୍ । ସବୁଠାରୁ ଭୟଙ୍କର ଥିଲା ଏହା ବେଗ । ଏକ ଜ୍ୱଳନ୍ତ ପ୍ରଚଣ୍ଡ ଅଗ୍ନି ପିଣ୍ଡୁଳା କ୍ରମେ ପୃଥିବୀ ଆଡକୁ ମାଡି ଆସୁଥିଲା । ସତେଯେପରି ଖୁବ୍ ଶୀଘ୍ର ଏହା ବିଶାଳ ସୌର ଦାନବ ପୃଥିବୀକୁ ଗିଳିପକାଇବ ।

ଅପରାହ୍ନ ୪ଟାବେଳେ ପୃଥିବୀକୁ ରକ୍ଷାକରିବା ପାଇଁ ଗଠିତ ସଂଗଠନ ବୈଠକରେ ଆଜି ଏକ ଅସମ୍ଭବ ନୀରବତା । ସମସ୍ତେ ଯେପରି ଅସହାୟ ହୋଇପଡିଛନ୍ତି । ଅନେକ ଦେଶର ରାଷ୍ଟ୍ରପତି, ବିଶ୍ୱର ବଛାବଛା ନୋବେଲ ପୁରାସ୍କାର ପ୍ରାପ୍ତ ବୈଜ୍ଞାନିକ କାହା ମନରେ ଆନନ୍ଦ ନାହିଁ । ଏହାର କାରଣ ବିଶେଷଭାବେ ପୃଥିବୀର ଉତ୍ତାପ ବୃଦ୍ଧି ନେଇ । ଗବେଷଣାଗାରର ଶକ୍ତିଶାଳୀ ଥର୍ମୋମିଟରରୁ କ୍ରମେ ପୃଥିବୀ ପୃଷ୍ଠର ଉତ୍ତାପ ବୃଦ୍ଧି ପାଉଥିବାର ଜଣାପଡିବା ଫଳରେ ସମସ୍ତେ ଆତଙ୍କିତ ହୋଇପଡିଛନ୍ତି । ହଠାତ୍ ସଂଘର୍ଷ ଘଟିବ ଓ ସମସ୍ତେ କେତେ ସେକେଣ୍ଡରେ ମୃତ୍ୟୁବରଣ କରିବାଠାରୁ କ୍ରମେ ବୃଦ୍ଧି ପାଉଥିବା ଉତ୍ତପ୍ତ ପୃଥିବୀର ଉତ୍ତାପକୁ ଯଦି ଏବେଠାରୁ ରୋକା ନ ଯାଏ ତେବେ ଜୀବନ୍ତ ଦଗ୍ଧ ହୋଇ କାଳାନ୍ତକ କଷ୍ଟସହି ସମସ୍ତ ପୃଥିବୀବାସୀ ଯେ ଆସ୍ତେ ଆସ୍ତେ ଛଟପଟହୋଇ ମୃତ୍ୟୁବରଣ କରିବେ ଏହାପୁଣି ବିଶିଷ୍ଟ ବୈଜ୍ଞାନିକଙ୍କ ଆଖିଆଗରେ ଏହାଠାରୁ ଆଉ ଦୁଃଖର ବିଷୟ କଣ ଅଛି ସମସ୍ତଙ୍କ ପାଇଁ । ମାତ୍ର ପୃଥିବୀର ନିକଟବର୍ତ୍ତୀ ଧୂମକେତୁ ଯେତେ ହେଉଥିବ ତାରି ଉପସ୍ଥିତି ପାଇଁ ପୃଥିବୀର ଉତ୍ତାପ ସେତେ ଶୀଘ୍ର ବୃଦ୍ଧି ପାଇବବୋଲି ବୈଜ୍ଞାନିକମାନେ ଘୋଷଣା କରିବାପରେ ସମସ୍ତଙ୍କ ମନରେ ଏହି ଆତଙ୍କର ପ୍ରଶ୍ନବାଚୀ । ''ତେବେ କଣ ଏହି ସମସ୍ୟାରୁ ରକ୍ଷା ପାଇବାର ଆଉ କୌଣସି ଉପାୟ ନାହିଁ ।'' ଆମେରିକା ରାଷ୍ଟ୍ରପତିଙ୍କର ଏହି ପ୍ରଶ୍ନ ଶୁଣି ପୃଥିବୀର ଅନେକ ବୈଜ୍ଞାନିକ ତଳକୁ ମୁହଁ ପୋତି

ସାରିଲେଣି । ନୀରବତା ଭିତରେ କେତେ ସମୟ କଟିଗଲାଣି । ସମସ୍ତେ ନୀରବ, ସ୍ତବ୍ଧ । ଅସହାୟଭାବେ ଏହି ସମସ୍ୟର ସମାଧାନ କରିବାକୁ ଚେଷ୍ଟାକରୁଥିବା ବୈଜ୍ଞାନିକମାନଙ୍କ ଆଡକୁ ଥରେ ଚାହିଁ ଉଠିଲେ ଡେଭିଡ୍ । ହଁ ସାର୍ ! ଏହି ସମସ୍ୟାରୁ ବର୍ତ୍ତିଯିବାପାଇଁ ଉପାୟ ଅଛି । ହଠାତ୍ ଡେଭିଡ୍‌ଙ୍କ ଏ ପ୍ରକାର ଘୋଷଣା ଦ୍ୱାରା ସତେଯେପରି ବୈଠକରେ ଚ଼ମକ ଖେଳିଗଲା, ନୀରବ, ନିସ୍ତେଜହୋଇ ବସି ରହିଥିବା ବୈଜ୍ଞାନିକମାନଙ୍କ ଭିତରେ ଦେଖାଦେଲା ନୂତନ ଉନ୍ମାଦନ, ନବ ଆନନ୍ଦର ଲହରୀ । ଡେଭିଡ୍‌ଙ୍କ ପରି ଜଣେ ବିଶିଷ୍ଟ ବୈଜ୍ଞାନିକ କୌଣସି ସୂତ୍ର ନ ପାଇଥିଲେ କେବେହେଲେ ଏ ପ୍ରକାର ଘୋଷଣା କରି ନ ଥାନ୍ତେ । ତେବେ କଣ ତାଙ୍କର ସମାଧାନର ସୂତ୍ର । ସମସ୍ତଙ୍କ ଲକ୍ଷ ଥିଲା କେବଳ ଡେଭିଡ୍‌ଙ୍କ ଆଡେ । କଣ ବାହାରିବ ତାଙ୍କ ପାଟିରୁ ତାହା ଜାଣିବାକୁ ସମସ୍ତେ ଉଦବିଗ୍ନ । ଡେଭିଡ୍ କହିଲେ ମୁଁ ଯାହା କହିବି ତାହା କାର୍ଯ୍ୟରେ ପରିଣତ କରିବା ଅତ୍ୟନ୍ତ କଷ୍ଟକର ବ୍ୟାପାର । ଏହି କାର୍ଯ୍ୟପାଇଁ ପ୍ରତ୍ୟେକ ସେକେଣ୍ଡରେ ବିପତ୍ତି ରହିଛି । ହୁଏତ ଧୂମକେତୁ ପୃଥିବୀ ସଂଘର୍ଷ ପୂର୍ବରୁ ପୃଥିବୀର ଧ୍ୱଂସ ଘଟିବ । ଏହା ମଧ୍ୟ ଅତ୍ୟନ୍ତ କଷ୍ଟକର କାର୍ଯ୍ୟ । ମାତ୍ର ଏହା ବ୍ୟତୀତ ପୃଥିବୀକୁ ଧୂମକେତୁ ମୁହଁରୁ ରକ୍ଷାକରିବାର ଆଉ କୌଣସି ବାଟ ନାହିଁ । ଏକା ନିଶ୍ୱାସରେ ଏ ସବୁ କହିଗଲେ ଡେଭିଡ୍ । ନବ ଉନ୍ମାଦନାରେ ସଭାସ୍ଥଳ ଆହ୍ଲାଦିତ ହୋଇଗଲା । କ'ଣ ତେବେ ଡେଭିଡ୍‌ଙ୍କ କାର୍ଯ୍ୟକ୍ରମ... ତାହା ଯେତେ କଷ୍ଟକର ହେଉପଛେ ଏହା କରବାକୁ ସମସ୍ତେ ଯେପରି ସଂକଳ୍ପ ବଦ୍ଧ ।



# ଡେଭିଡ୍‌ଙ୍କ ଶେଷ ଯୋଜନା

ସାରା ବିଶ୍ୱର ସର୍ବଶ୍ରେଷ୍ଠ, ପ୍ରଖ୍ୟାତ ଜ୍ୟୋତିର୍ବିଜ୍ଞାନୀ ଡେଭିଡ୍‌ଙ୍କ ଆଡେ ସମସ୍ତେ ଏକଲୟରେ ଚାହିଁରହିଥିଲେ । କଣ ହେବ ତାଙ୍କର ଯୋଜନା ପୃଥିବୀକୁ ଏହି ବିଶାଳ ନିର୍ଜୀବ ଦାନବ ମୁହଁରୁ ରକ୍ଷାକରିବା ପାଇଁ !



ଡେଭିଡ୍ ଆରମ୍ଭ କଲେ । ପୃଥିବୀକୁ ଧୂମକେତୁ ମୁହଁରୁ ବଞ୍ଚାଇ ରଖିବାକୁ ଆମ ସମସ୍ତଙ୍କୁ ଶେଷ ସଂଗ୍ରାମ କରିବାକୁ ହେବ ଆଉ ଧୂମକେତୁ ସହ ଏହି ଯେଉଁ ବୃହତ୍ତ ସଂଗ୍ରାମ ଅନୁଷ୍ଠିତ ହେବ ତାହାର ମୁଖ୍ୟ ସୈନିକ ହେବେ ବିଶ୍ୱର ବଛାବଛା ବୈଜ୍ଞାନିକଗଣ । ଡେଭିଡ୍ କହିଲେ ବର୍ତ୍ତମାନ ସୁଦ୍ଧା ମିଳିଥିବା ତଥ୍ୟରୁ ଯାହା ଜଣାପଡୁଛି ପୃଥିବୀ ମୁହାଁ ହୋଇଥିବା ଏହି ଧୂମକେତୁର ଶରୀରର ପ୍ରସ୍ଥ ପ୍ରାୟ ୧୦ କିଲୋମିଟର ଓ ଲମ୍ବ ହଜାର ହଜାର କିଲୋମିଟର । ଏହି ଧୂମକେତୁର ପୃଥିବୀ ସହ ସଂଘର୍ଷ ସମୟରେ ଏହା ଜାପାନର ହିରୋସିମା ଉପରେ ପଡିଥିବା ପରମାଣୁ ବୋମାଠାରୁ ୧୦ ହଜାର ଗୁଣ ଅଧିକ ଶକ୍ତି ସୃଷ୍ଟିକରିବା ସହ ପୃଥିବୀରେ ମାଡହେବ । ତତ୍‌କ୍ଷଣାତ ମାଡ ହେବା ସ୍ଥାନରେ ପ୍ରାୟ ୩୦୦ ମାଇଲ ପ୍ରସ୍ଥର ଏକ ବୃହତ୍ତ ଗର୍ତ୍ତ ସୃଷ୍ଟିହେବା ସହ ଏହି ଅଞ୍ଚଳର ଭୂଭାଗରେ ଧୂଳିକଣା, ପାହାଡ ପର୍ବତ ଯଦିଥାଏ ତେବେ ଆକାଶକୁ ଖଣ୍ଡବିଖଣ୍ଡିତ ହୋଇ ଉଠିଯିବ । ଭୂଭାଗରୁ ଆକାଶକୁ ଏତେ ପରିମାଣର ଧୂଳି, ଧୂଆଁ, ମାଟିଗୋଡି ଉଠିଯିବ ଯେ ତାହା ମାସମାସ ଧରି ଏକ କଳା ବହଳିଆ ବାଦଲ ବାୟୁମଣ୍ଡଳରେ ସୃଷ୍ଟିକରିବ ଏବଂ ସୂର୍ଯ୍ୟରଶ୍ମୀ ଆଉ ଭୂଭାଗ ଯାଏ ଆସିପାରିବ ନାହିଁ । ଫଳରେ ଜୀବଜନ୍ତୁ, ଉଦ୍ଭିଦ ସବୁ ମରିବେ । ଉତ୍ତପ୍ତ ଭୂଖଣ୍ଡ, ପ୍ରସ୍ତରଖଣ୍ଡ ଜ୍ୱଳନ୍ତ ଅବସ୍ଥାରେ ଆକାଶକୁ ଉଠିଯିବାପରେ ତଳକୁ ଖସିଆସି ଅନେକ ଅଞ୍ଚଳରେ ଅଗ୍ନିର ତାଣ୍ଡବଲୀଳା ରଚାଇବା ସହ ପ୍ରଚଣ୍ଡ ଉତ୍ତପ୍ତ ଅବସ୍ଥା ସୃଷ୍ଟିକରିବ । ଏହା ଫଳରେ ଅନେକ ଅଞ୍ଚଳର ଉଦ୍ଭିଦରାଜି ଜଳିପୋଡିଯିବେ । ବାୟୁମଣ୍ଡଳର ଅମ୍ଳଜାନ ଓ ଯବକ୍ଷାରଜାନ ମିଶିଯାଇ ନାଇଟ୍ରିକ୍ ଏସିଡ ସୃଷ୍ଟିକରିବ ଓ ଏହା ଜୀବନ୍ତ ବସ୍ତୁ ଉପରେ ପଡିବାମାତ୍ରେ ତାହାକୁ ଜାଳିଦେବ । ଏହି ଧୂମକେତୁର ପୃଥିବୀ ସହିତ ସଂଘର୍ଷବେଳେ ପ୍ରଚଣ୍ଡ ବେଗରେ ବିସ୍ତୃତ ଅଞ୍ଚଳରେ ସାମୁଦ୍ରିକ ଜଳ ଆକାଶକୁ ଉଠିଯିବ ଓ ନିକଟବର୍ତ୍ତୀ ସ୍ଥଳଭାଗ ଉପରେ ଏହା ପରମୁହୂର୍ତ୍ତରେ ଅଜାଡି ହୋଇପଡିବା ସହ ଅନେକ ସହର ବଜାର ଛାରଖାର ହୋଇଯିବ । ଏଥିରୁ ସୃଷ୍ଟ ପ୍ରଚଣ୍ଡ ଶକ୍ତିଦ୍ୱାରା ଭୂପୃଷ୍ଠ ଆନ୍ଦୋଳିତ ହୋଇ ଅନେକ ଅଞ୍ଚଳରେ ଭୂମିକମ୍ପ ସୃଷ୍ଟିହେବ ଓ ଅନେକ ଅଞ୍ଚଳକୁ ଉତ୍ତାଳ ସାମୁଦ୍ରିକ ଢେଉ ମାଡିଯିବ । ସେ କହିଲେ ଏହି ଧୂମକେତୁ ମୁହଁରୁ ଜୀବଜଗତକୁ ହୁଏତ ପୃଥିବୀ ପୃଷ୍ଠରେ ବଞ୍ଚାଇରଖିବା ସମ୍ଭବ ହେବ ନାହିଁ, ଦୀର୍ଘ ନିଶ୍ୱାସ ପକାଇ ଏହା କହୁଥିଲେ ଡେଭିଡ୍ ।

ମାତ୍ର ହଠାତ୍ ସେ ସତେଜ ହୋଇଉଠିଲେ । ତାଙ୍କ ମୁଖମଣ୍ଡଳରୁ ସତେଯେପରି ବାହାରି ଆସୁଥିଲା ନୂତନ ଆଶାର ଚିହ୍ନ । ତାଙ୍କର ଆବଭାବରେ ପରିବର୍ତ୍ତନ ଦେଖି

ସମସ୍ତ ଉପସ୍ଥିତ ବରିଷ୍ଠ ବୈଜ୍ଞାନିକ, ରାଜନୈତିକ ନେତୃବୃନ୍ଦ ମଧ୍ୟ ଆଗ୍ରହ ସହ ଅପେକ୍ଷା କଲେଣି ଡେଭିଡ୍‌ଙ୍କ ପରବର୍ତ୍ତୀ କାର୍ଯ୍ୟକ୍ରମକୁ । ବିପଦ ଯେତେ କଠିନ ହେଉ ପଛେ ଆମକୁ ଏହା ବିରୋଧରେ ସଂଗ୍ରାମ କରିବାକୁ ହେବ । ଡେଭିଡ୍ ସଙ୍ଗେ ସଙ୍ଗେ ସହ ବୈଜ୍ଞାନିକ ଆଲବର୍ଟଙ୍କୁ ନିର୍ଦ୍ଦେଶଦେଲେ ଭି.ସି.ଆର ସଂଚାଳନ କରିବାକୁ । ସେଥିରେ ସଂଯୁକ୍ତ ହୋଇଥିଲା ତାଙ୍କର ବିଶ୍ୱକୁ ଧୂମକେତୁ ମୁହଁରୁ ବଞ୍ଚାଇ ରଖିବାର ଯୋଜନା । ଟେଲିଭିଜନର ବିରାଟ ପରଦାରେ ଉଦ୍‌ଭାସିତ ହେଲାଣି ସମ୍ପୂର୍ଣ୍ଣ ସୌରଜଗତର ଆଲୌକିକ ଚିତ୍ର । ଏଥିସହ ଧୂମକେତୁର ଗତିପଥ । ଖୁବ କ୍ଷୀପ୍ର ବେଗରେ ଗତିକରି ଚାଲୁଥିଲା ଏହି ଜ୍ୱଳନ୍ତ ରାକ୍ଷସ ପୃଥିବୀ ଆଡେ । ସେ ଅନ୍ୟ ସମସ୍ତ ସୌରମଣ୍ଡଳ ଗ୍ରହ ଓ ଉପଗ୍ରହଙ୍କ କକ୍ଷପଥ ଦେଇ ଆସୁଥିଲେ ମଧ୍ୟ ସେମାନଙ୍କ ପରିବର୍ତ୍ତିତ ଅବସ୍ଥିତ ଯୋଗୁ ସେମାନଙ୍କ ସହ ସଂଘର୍ଷ ଘଟିବାର ସମସ୍ତ ସମ୍ଭାବନାକୁ ଏଡାଇ ଦେଇ ଆସୁଥିଲା । ମାତ୍ର ପୃଥିବୀ ! ଠିକ ପୃଥିବୀ ସହ ତାର ମୁହାଁମୁହିଁ ସଂଘର୍ଷର କାଳ୍ପନିକ ରୂପରେଖ ଏକ ପ୍ରକାର ପ୍ରସ୍ତୁତ କରିଥିଲେ ଡେଭିଡ୍ । ଏହା ଯେପରି ଭୟାବହ, ସେହିପରି ମର୍ମନ୍ତୁଦ ଥିଲା । ଯଦି ଧୂମକେତୁ ଆଉ ଅଧଘଣ୍ଟା ବିଳମ୍ବରେ ଆସନ୍ତା ତେବେ ପୃଥିବୀ ହୁଏତ ଗତିପଥରେ କିଛିବାଟ ଆଗେଇଯାଇ ଏହା ମୁହଁରୁ ବର୍ତ୍ତିଯାଇ ପାରନ୍ତା । ମାତ୍ର ଏହାତ କୌଣସିମତେ ସମ୍ଭବ ନୁହେଁ । ତେବେ ବାଟ କଣ ? ଡେଭିଡ୍ ତାଙ୍କର ଯୋଜନା ଉପସ୍ଥାପନ କଲେ ସମସ୍ତଙ୍କ ନିକଟରେ । ଧୂମକେତୁର ପଥରୋଧପାଇଁ ମହାକାଶକୁ ଶକ୍ତିଶାଳୀ ପରମାଣୁ ବୋମାବାହୀ କ୍ଷେପଣାସ୍ତ୍ର ପଠାଇବା ଛଡ଼ା ଅନ୍ୟ କୌଣସି ବାଟ ନାହିଁ । ହୁଏତ ଏହି ଶକ୍ତିଶାଳୀ ବୋମାସହ ମହାକାଶରେ ଧୂମକେତୁର ସଂଘର୍ଷ ପ୍ରଥମେ ଘଟିବ ଓ ଏହାଫଳରେ ଧୂମକେତୁର ଗତିପଥ ପରିବର୍ତ୍ତନ କରାଇବାରେ ସାମର୍ଥ୍ୟ ଲାଭ କରାଯାଇପାରିବ । ମାତ୍ର ଏତେବଡ ଧୂମକେତୁ ଗତିପଥ ପରିବର୍ତ୍ତନ କରିବାପାଇଁ ସେହିଭଳି ଶକ୍ତିଶାଳୀ ପରମାଣୁ କ୍ଷେପଣାସ୍ତ୍ର ଆବଶ୍ୟକ । ତାହା ନ ହେଲେ ସମୁଦ୍ରକୁ ଶଂଖେ ଭଳି କାର୍ଯ୍ୟ ହେବ ଓ ଏତେ ପରିଶ୍ରମର କୌଣସି ମୂଲ୍ୟ ରହିବ ନାହିଁ । ମାତ୍ର ଯଦି ଏହି ବିସ୍ଫୋରଣ ସତ୍ତ୍ୱେ ଧୂମକେତୁର ଗତିପଥ ପରିବର୍ତ୍ତନ ନ ହେଲା ତେବେ ପୃଥିବୀର ଧ୍ୱଂସ ଅନିବାର୍ଯ୍ୟ ବୋଲି ଘୋଷଣା କରୁଥିଲେ ଡେଭିଡ୍ । ଯୁକ୍ତରାଷ୍ଟ୍ରର ରାଷ୍ଟ୍ରପତିଙ୍କ ପ୍ରଶ୍ନର ଉତ୍ତର ଦେଇ ସେ କହିଲେ ଯଦି ବିସ୍ଫୋରଣ ଠିକ୍‌ଭାବେ ହୁଏ ତେବେ ଗତିପଥ ପରିବର୍ତ୍ତନ ଆଶା ଶତକଡ଼ା ୯୦ଭାଗ । ମାତ୍ର ଏହି କାର୍ଯ୍ୟକ୍ରମରେ ବିପଦ ମଧ୍ୟ ରହିଛି । ପ୍ରତ୍ୟେକ ମୂହର୍ତ୍ତରେ ଆମକୁ ବିପଦର ସମ୍ମୁଖୀନ ହେବାକୁ ହେବ । ପୃଥିବୀରୁ ଅତ୍ୟନ୍ତ ବୃହତ୍,

ବିସ୍ଫୋରଣକାରୀ ଆଣବିକ ବୋମା ବୋହି ନେଉଥିବା କ୍ଷେପଣାସ୍ତ୍ରର ଉତ୍‌କ୍ଷେପଣ ସମୟରେ ସାମାନ୍ୟ ଭୁଲ ରହିଗଲେ ଉତ୍‌କ୍ଷେପଣ କେନ୍ଦ୍ର ସହ ଏକ ବିରାଟ ଅଞ୍ଚଳ ମାତ୍ର କେତେ ସେକେଣ୍ଡ ମଧ୍ୟରେ ମହାଶ୍ମଶାନରେ ପରିଣତ ହୋଇଯିବ । ଏହାଛଡା ଯଦି ଏହା ନିର୍ଦ୍ଧାରିତ ସ୍ଥାନ ପୂର୍ବରୁ ବିସ୍ଫୋରିତ ହୁଏ ତେବେ ପୃଥିବୀ ପୃଷ୍ଠର ଜୀବଜଗତଉପରେଏହା କୁପ୍ରଭାବ ପକାଇବି । ଯେଉଁ ଶକ୍ତିଶାଳୀ ପରମାଣୁ ବୋମା ମହାକାଶକୁ ପ୍ରେରଣ କରାଯିବ ତାର ଶକ୍ତି ଜାପାନର ହିରୋସୀମା, ନାଗାସାକୀରେ ପଡିଥିବା ବୋମାଠାରୁ ପ୍ରାୟ ହଜାରହଜାର ଗୁଣ ଅଧିକ ଶକ୍ତିଶାଳୀ ହେବ । ଏହି ବୋମାକୁ ତିଆରି କରିବାକୁ ଆଜିଠାରୁ ଯୁଦ୍ଧକାଳୀନ ଭିତ୍ତିରେ କାମ ଆରମ୍ଭ କରିବାକୁ ହେବ ଓ ଆଉ ୨ମାସ ପରେ ଏହାକୁ ନିଶ୍ଚିତଭାବେ ମହାକାଶକୁ ପଠାଇବାକୁ ହେବ କାରଣ ଏହାପରେ ଧୂମକେତୁ ପୃଥିବୀର ଖୁବ୍ ନିକଟକୁ ଆସିଯାଉଥିବାରୁ ଧୂମକେତୁ ସହିତ କୌଣସି ପ୍ରକାର ସଂଘର୍ଷ କରାଗଲେ ଏହାର କୁପ୍ରଭାବ ପୃଥିବୀ ଉପରେ ପଡିବ । ୫୦ହଜାର ମେଗାଟନର ଶକ୍ତିଶାଳୀ ପରମାଣୁ ବୋମା ନିର୍ମାଣ ମାତ୍ର ଦୁଇମାସ ମଧ୍ୟରେ କରାଯିବ । ଏହି ଯୋଜନା ପାଇଁ ସବୁଠାରୁ ବଡ କାର୍ଯ୍ୟ ୫୦ ହଜାର ମେଗାଟନର ପରମାଣୁ ବୋମା ପ୍ରସ୍ତୁତ ତାହା ପୁଣି ମାତ୍ର ୨ମାସ ଭିତରେ । ଏହାଶୁଣି ଅନେକ ବୈଜ୍ଞାନିକ ନିଜନିଜ ଆଡକୁ ଚାହିଁ ନିଜର ଅସହାୟତା ପ୍ରକାଶ କରୁଥିଲେ । ମାତ୍ର ଏହାଯେ ପଛଘୁଞ୍ଚାର ବେଳନୁହେଁ । ହୁଏତ ଯେକୌଣସି ପ୍ରକାରେ ଏହା କରିବାକୁ ହିଁ ହେବ ନଚେତ ବିକଳ୍ପ ପନ୍ଥାଭାବେ ସମୂଳେ ଧ୍ୱଂସ ପ୍ରକ୍ରିୟାକୁ ସ୍ୱୀକାର କରିବାକୁ ହେବ । ଯାହା ପଦକ୍ଷେପ ନେବାକୁ ହେବ ସବୁ ଯୁଦ୍ଧକାଳୀନ ଭିତ୍ତିରେ ହିଁ କରାଯିବା ଆବଶ୍ୟକ । ଏତେ ଶକ୍ତିଶାଳୀ ପରମାଣୁ ବୋମା ଓ ରକେଟ ନିର୍ମାଣର ସ୍ଥାନ ନିରୂପଣ କରାଯିବା ମଧ୍ୟ ଜରୁରୀ । କାରଣ ଏହି ବୋମା ନିର୍ମାଣ ତଥା ଉତ୍‌କ୍ଷେପଣ ସମୟରେ ଦୁର୍ଘଟଣା ଓ ବିସ୍ଫୋରଣ ଘଟିବାର ସମ୍ଭାବନା ରହିଥିବାରୁ ଏହା ଏକ ଜନମାନବଶୂନ୍ୟ ଅଞ୍ଚଳରେ କରାଯିବା ଦରକାର ପୁଣି ଏଥିପାଇଁ ଅର୍ଥର ଯଥେଷ୍ଟ ଆବଶ୍ୟକତା ରହିଛି । ଏସବୁ କହି ଚାଲିଥିଲେ ଡେଭିଡ୍ ।

ଯେତେବେଳେ ପୃଥିବୀର ସ୍ଥିତି ବିପନ୍ନ ସେତେବେଳେ ଧନସଂପଦ ସାଇତି ରଖିବାର ଆବଶ୍ୟକତା କଣ ? ଏକ ବୁଡିଯାଉଥିବା ଡଙ୍ଗାରେ ରହିଥିବା ସୁନାମୋହର ଯେପରି ମୂଲ୍ୟହୀନ ଏବେ ତ ପୃଥିବୀ ପୃଷ୍ଠରେ ଥିବା ଧନସଂପଦର ମୂଲ୍ୟ ସେହଭଳି । ଯୁକ୍ତରାଷ୍ଟ୍ର ରାଷ୍ଟ୍ରପତି ଘୋଷଣାକଲେ ସେହି ବୈଠକରେ ହିଁ ସଙ୍ଗେ ସଙ୍ଗେ

ରକେଟ ନିର୍ମାଣର ସ୍ଥାନ ନିରୂପିତ ହେବ । ତାହା ହିଁ ହେଲା ଋଷର ଚିର ତମସାଛନ୍ନ ଜନମାନବଶୂନ୍ୟ ସାଇବେରିଆ ଅଞ୍ଚଳରେ ରେକେଟ ନିର୍ମାଣ କାର୍ଯ୍ୟ ଆରମ୍ଭ କରିବାକୁ ପ୍ରସ୍ତାବ ଦେଲେ କେତେକ । ଏହାକୁ ସଂଗେ ସଂଗେ ଗ୍ରହଣ କରିନିଆଗଲା । ଋଷର ତାଜାକିସ୍ଥାନର କାରାବୁଲ ଅଞ୍ଚଳରେ ପ୍ରାୟ ଏକ କୋଟି ବର୍ଷ ତଳେ ଏକ ଗ୍ରହାଣୁ ମାଡ ଦ୍ୱାରା ସୃଷ୍ଟିହୋଇଥିବା ପ୍ରକାଣ୍ଡ ଗହ୍ୱର ଆଜିଯାଏ ମଧ୍ୟ ଗ୍ରହାଣୁ ଓ ଧୂମକେତୁ ସଂଘର୍ଷଜନୀତ ବିଭୀଷିକାମୟ ଚିତ୍ର ଜନ ମାନସରେ ସୃଷ୍ଟି କରିପାରୁଛି । ଏହା ବ୍ୟତୀତ ସାଇବେରିଆ ଅଞ୍ଚଳରେ ମଧ୍ୟ ୧୯୦୮ ମସିହା ଜୁନ ୩୦ ତାରିଖରେ ମାଡ ହୋଇଥିବା ଗ୍ରହାଣୁ ଦ୍ୱାରା ଧ୍ୱଂସ ପାଇଥିବା ହଜାର ହଜାର ବର୍ଗ କିଲୋମିଟର ଜଙ୍ଗଲ ଓ ଗ୍ରହାଣୁ କ୍ଷତ ଏବେ ସୁଦ୍ଧା ବିଦ୍ୟମାନ ରହିଛି । ସେହି ବୃହତ୍ ଗହ୍ୱରକୁ ଦେଖି ଲୋକେ କ୍ଷୁଦ୍ର ଗ୍ରହାଣୁ ସଂଘର୍ଷର କରାଳରୂପ ଦେଖିପାରୁଥିବା ବେଳେ ଗ୍ରହାଣୁଠାରୁ ହଜାର ହଜାର ଗୁଣ ବୃହତ୍ ଧୂମକେତୁ ସଂଘର୍ଷ ହେଲେ ପୃଥିବୀ ଯେ ଖଣ୍ଡଖଣ୍ଡ ହୋଇଯାଇପାରେ ଏହା ମଧ୍ୟ ଅନେକ ଆଶା କରୁଥିଲେ । ଋଷର ବିସ୍ତୀର୍ଣ୍ଣ ପ୍ରାନ୍ତରରେ ଏହି ବୋମା ନିର୍ମାଣ ପାଇଁ ନିଷ୍ପତ୍ତି ଗ୍ରହଣ କରାଯିବା ପରେ ପରେ ଏହି କାର୍ଯ୍ୟରେ କେଉଁ ବୈଜ୍ଞାନିକମାନେ ଅଂଶଗ୍ରହଣ କରିବେ ତାର ଚିଠା ସଙ୍ଗେ ସଙ୍ଗେ ପ୍ରସ୍ତୁତ ହୋଇଗଲା । ତା' ପରଦିନଠାରୁ କାର୍ଯ୍ୟ ଆରମ୍ଭ କରିବାକୁ ହେବ । ଯୁକ୍ତରାଷ୍ଟ୍ର ରାଷ୍ଟ୍ରପତି ତଥା କମିଟିର ଅଧ୍ୟକ୍ଷ ସଙ୍ଗେ ସଙ୍ଗେ ସାରା ବିଶ୍ୱରେ ଜରୁରୀକାଳୀନ ଅବସ୍ଥା ଜାରୀ କରିବାକୁ ଘୋଷଣା କରିବାକୁ ପ୍ରସ୍ତାବ ଦେଲେ ଏବଂ ତାହା ସର୍ବସମ୍ମତି କ୍ରମେ ଗୃହୀତ ହେଲା ।



# ବିଶ୍ୱରେ ଏମରଜେନ୍ସି

ରାଷ୍ଟ୍ରପତିଙ୍କ ନିର୍ଦ୍ଦେଶ ଅନୁସାରେ ସଙ୍ଗେ ସଙ୍ଗେ ପୃଥିବୀର ସମସ୍ତ ରାଷ୍ଟ୍ରମୁଖ୍ୟଙ୍କୁ ଜରୁରୀ ବାର୍ତ୍ତା ଦ୍ୱାରା ଏମରଜେନ୍ସି ଜାରୀ କରାଯିବା ବିଷୟରେ ଜଣାଇଦିଆଗଲା । ପ୍ରାୟ ତିନିହଜାର ବରିଷ୍ଠ ବିଶିଷ୍ଟ ବୈଜ୍ଞାନିକଙ୍କୁ ବୋମା ଓ ରକେଟ ନିର୍ମାଣ କାର୍ଯ୍ୟରେ ମୁତୟନ କରାଯିବାକୁ ନିଷ୍ପତ୍ତି ଗ୍ରହଣ କରାଯିବା ସହ ସମସ୍ତେ ୨୪ଘଣ୍ଟା ଭିତରେ ଆସି ରକ୍ଷସ୍ଥିତ ରକେଟ ନିର୍ମାଣ କେନ୍ଦ୍ରରେ ପହଞ୍ଚିବାକୁ ଜରୁରୀ ନିର୍ଦ୍ଦେଶ ଦିଆଗଲା । ସାରା ବିଶ୍ୱରେ ଚହଳ । ଅନେକ ଅସହାୟ ହୋଇପଡିଲେଣି । ବର୍ତ୍ତମାନ ପୃଥିବୀ ଏକ ବିଶ୍ୱ ଓ ସମସ୍ତ ଦେଶ ଗୋଟିଏ ବିଶ୍ୱର ଅଂଶବିଶେଷ - ସମସ୍ତଙ୍କ ଲକ୍ଷ ଏହାର ସୁରକ୍ଷା । ଏତେବେଳେ ଆଉ ନିଜନିଜ ଭିତରେଜାତି, ଧର୍ମ, ବର୍ଣ୍ଣ କିଛି ନାହିଁ । ସମସ୍ତେ ମଣିଷ ଜାତିର, ସମସ୍ତଙ୍କ ରକ୍ତର ରଙ୍ଗ ନାଲି ଆଉ ଧନୀ, ଗରିବ ସମସ୍ତେ ସମାନ । ପୃଥିବୀର ଯେ କୌଣସି ଦେଶ ନିକଟରେ ଯେତେ ପରିମାଣର ପରମାଣୁ ଅସ୍ତ୍ର ନିର୍ମାଣପାଇଁ ବ୍ୟବହୃତ ହେଉଥିବା ୟୁରାନିୟମ, ଟ୍ରିଟାନିୟମ ଇତ୍ୟାଦି ଅଛି ତାହା ତୁରନ୍ତ ଆଣି ଗବେଷଣା କେନ୍ଦ୍ର ନିକଟରେ ସୁରକ୍ଷିତ ଭାବେ ପହଞ୍ଚାଇବାକୁ ନିର୍ଦ୍ଦେଶ ଦିଆଗଲା ।

କାନ୍ଥ ଘଣ୍ଟାରେ ୫ଟା ବାଜିବାର ସୂଚନା । ଗତକାଲି ଅପରାହ୍ନ ୪ଟାରୁ ଆରମ୍ଭ ହୋଇଥିବା ବୈଠକ ଇତି ମଧ୍ୟରେ ୧୩ ଘଣ୍ଟା କାଳ ଚାଲିସାରିଥିଲେ ମଧ୍ୟ ତଥାପି ଏହା ସରୁନାହିଁ । କିପରି ଭାବେ ସମୟ ଅତିବାହିତ ହେଉଛି ତାହା ଜାଣିବାର ଉପାୟ ନାହିଁ । ନିଦ ଏକ ପ୍ରକାର ସମସ୍ତଙ୍କ ଆଖିରୁ ଉଭେଇ ଯାଇଛି । ହାତରେ ଆଉ ମାତ୍ର ଛଅ ମାସ ବାକି । ସେତିକି ସମୟ ମଧ୍ୟରୁ ୨ମାସ ଭିତରେ ରକେଟ ଓ ବୋମା ନିର୍ମାଣ କରି ଧୂମକେତୁର ଗତିପଥ ନିକଟକୁ ପଠାଇବାକୁ ପଡିବ । ଏବେ ଦିନ ଓ ରାତ୍ରି କଣ ବୈଜ୍ଞାନିକମାନଙ୍କୁ ଭୁଲିଯିବାକୁ ହେବ ଏବଂ ନିଜର ଜ୍ଞାନ କୌଶଳ, ଗାରିମା ସବୁ ପ୍ରଦର୍ଶନକରି ପୃଥିବୀକୁ ରକ୍ଷାକରିବାକୁ ହେବ । ତେବେ ଏହି ଗୁରୁ ଦାୟିତ୍ୱର ନେତୃତ୍ୱ ନେବ କିଏ ?

ଯୁକ୍ତରାଷ୍ଟ୍ର ରାଷ୍ଟ୍ରପତି କହୁଥିଲେ ଏହି ଦାୟିତ୍ୱ ଡେଭିଡ୍‌ଙ୍କ ବ୍ୟତୀତ ଆଉ କାହା ଉପରେ ଛାଡି ଦିଆଯାଇ ନ ପାରେ । ତାଙ୍କୁ ସହାୟତା ପ୍ରଦାନ କରିବାକୁ ରବର୍ଟ ଷ୍ଟୋହେଲ, ମାଇକେଲ ସ୍କଟ ପ୍ରମୁଖ ୧୦ ଜଣ ବରିଷ୍ଠ ବୈଜ୍ଞାନିକଙ୍କ ନାମ ଘୋଷଣା କରାଗଲା ।

ପୂର୍ବ ଆକାଶରେ ସୂର୍ଯ୍ୟୋଦୟର ଚ଼ମକ ପ୍ରକଟିତ ହେଲାଣି । ଆମେରିକାର ଶୀତୁଆ ସକାଳର ପାହାନ୍ତିଆ ପହରରେ ତରଙ୍ଗାୟୀତ ଧୀର ପବନରେ ନାଚ଼ି ନାଚ଼ି ଚାଲିଛନ୍ତି ଅନେକ କାଶତଣ୍ଡି ଗଛ । ସତେଯେପରି ସେମାନେ ନୃତ୍ୟ କରୁଛନ୍ତି । କାକରଭିଜା ମୃତ୍ତିକା ଉପରେ ଉଠିଥିବା ଅନେକ ସୁନ୍ଦର ପୁଷ୍ପରାଜିରୁ ଭାସି ଆସୁଛି ସୁଗନ୍ଧର ଲହରୀ । ଆକାଶରେ ଉଡିବୁଲିଲେଣି ଅସୁମାରୀ ରଙ୍ଗବେରଙ୍ଗର ପକ୍ଷୀ । ହଠାତ୍ କାହୁଁ ଥିଲା ଏକ କଳାହାଣ୍ଡିଆ ମେଘମାଳା ସୂର୍ଯ୍ୟ ଉପରକୁ ମାଡିଆସିଲା । ସୁବର୍ଣ୍ଣର ଚ଼ମକ ଦେହରେ କଳା ବାଦଲର ଲୁଚ଼କାଳି ଖେଳ । ବାଦଲର ପରିସୀମାରେ ବିଜୁଳିପରି ପ୍ରତୀୟମାନ ହେଉଛି ସୁବର୍ଣ୍ଣଧଡିର ଚ଼ମତ୍କାର ଦୃଶ୍ୟ । ଏକସଙ୍ଗେ ବାହାରୁଥିଲେ ସମସ୍ତ ବୈଜ୍ଞାନିକ ଓ ବିଶ୍ୱର ବରିଷ୍ଠ ରାଜନୈତିକ ନେତାମାନ ବୈଠକ ସାରି ବାହାରକୁ । ବାହାରିବାବେଳେ ଏପରି ଅଲୌକିକ ଦୃଶ୍ୟ ଦେଖି କ୍ଷଣକେ ଅଟକି ଯାଇଥିଲେ ସେମାନେ । ସେତେବେଳେଯାଏ ପ୍ରଖର ସୂର୍ଯ୍ୟାଲୋକ ଧରାବକ୍ଷରେ ବିଛୁରିତ ହୋଇନାହିଁ । ପଶ୍ଚିମ ଦିଗକୁ ହାତବଢ଼ାଇ ଡେଭିଡ ଧୂମକେତୁର ଅବସ୍ଥିତି ବିଷୟରେ ସମସ୍ତଙ୍କୁ ଦେଖାଇ ଦେଉଥିଲେ । ପଶ୍ଚିମ ଦିଗରେ ଆକାଶରେ ଉଇଁଲାଣି ସେହି କରାଳ ଧୂମକେତୁ । କେତେ କ୍ଷୁଦ୍ର ଦେଖାଯାଉଛି ଏବେ ଏହି ଧୂମକେତୁ । ମାତ୍ର କ୍ରମେ ଏହାର ଆକାର ବୃଦ୍ଧିପାଇବ ଓ ଏହା ଯେ ବିଶ୍ୱର ବିନାଶ ପାଇଁ ଦାୟୀ ହେବ ତାହା କଣ ଏହାକୁ ଏବେ ଦେଖି ଜାଣି ହେଉଛି ?

କମନୀୟ ପ୍ରାତଃ ସୂର୍ଯ୍ୟର ଚ଼ମକ ବହନକରି ପ୍ରତିଭାତ ହେଉଥିବା ଧରଣୀରାଣୀର ଅପରୂପ ରୂପ ବର୍ଦ୍ଧନରେ କିନ୍ତୁ କ୍ଷଣିକ ପାଇଁ ମତ୍ତ ରହିଥିଲେ ସବୁ-ବୈଜ୍ଞାନିକ ଓ ନେତୃବୃନ୍ଦ । ହାୟ ! ସତେ କଣ ଏତେ ସୁନ୍ଦର, ଅପରୂପ ସୌନ୍ଦର୍ଯ୍ୟର ଗନ୍ତାଘର କୋଟିକୋଟି ରଙ୍ଗବେରଙ୍ଗ ଜୀବ, ଉଦ୍ଭିଦରେ ପୂର୍ଣ୍ଣ ପୃଥିବୀରାଣୀ ଧ୍ୱଂସ ପାଇବ ? ମାତ୍ର ପୃଥିବୀରେ ପ୍ରାୟ ଏକକୋଟି ବର୍ଷ ଯାଏ ରାଜୁତି କରୁଥିବା ଡାଇନୋସର ପରି ବିଶାଳ ଜୀବ ଯେତେବେଳେ ଏହିଭଳି ଏକ ଧୂମକେତୁ ସଂଘର୍ଷରେ

ସମୂଳେ ବିନାଶ ପ୍ରାପ୍ତ ହୋଇଗଲା, ସେତେବେଳେ ମାନବ ତ ତା'ଠାରୁ ଅତ୍ୟନ୍ତ କ୍ଷୁଦ୍ର ପୁଣି ମାନବର ଜନ୍ମ ପୃଥିବୀ ବକ୍ଷରେ ମାତ୍ର ୧୫ ଲକ୍ଷ ବର୍ଷ ପୂର୍ବରୁ । ତେଣୁ ମାନବ କାହିଁକି ସମୂଳେ ଧ୍ୱଂସ ପାଇବ ନାହିଁ ? ମାତ୍ର ଡାଇନୋସର ଯେତେ ବିଶାଳ ହେଲେ ମଧ୍ୟ ମାନବପରି କ'ଣ ସେ ଥିଲ ବୁଦ୍ଧିମାନ ? ଯଦି ବୁଦ୍ଧିମାନ ବିବେକ ସଂପନ୍ନ ମାନବ ପୃଥିବୀକୁ ବିପଦ ମୁଖରୁ ରକ୍ଷାକରି ନ ପାରିବ ତେବେ ବିଶାଳ ନିବୁର୍ଦ୍ଧିଆ ଡାଇନୋସର ଓ ମଣିଷ ଭିତରେ ପ୍ରଭେଦ ରହିଲା କେଉଁଠି ? ଏପରି ଅନେକ ପ୍ରଶ୍ନ ଉଙ୍କି ମାରୁଥିଲା ଡେଭିଡଙ୍କ ମନଭିତରେ ଓ ଆପଣାଭିତରେ ପ୍ରଶ୍ନ ଓ ଉତ୍ତର, ସମସ୍ୟା ଓ ସମାଧାନ ସଂପର୍କରେ ଅହରହ ଲାଗିଥିଲା ଅସମାପ୍ତ ଆଲୋଚ଼ନା ।

ଗାଡି ପ୍ରସ୍ତୁତ । ସିଧା ଏୟାରପୋର୍ଟକୁ ଯାତ୍ରା । ସାରା ରାତ୍ରିର ଅନିଦ୍ରାପରେ ମଧ୍ୟ ବିଶ୍ରାମ ନେବାକୁ ଗୋଟିଏ ସେକେଣ୍ଡ ସମୟ ନାହିଁ । ନିତ୍ୟକର୍ମ ହିଁ ସାରିବାକୁ ହେବ ବିମାନ ଭିତରେ । ଗୋଟିଏ ସେକେଣ୍ଡ ନଷ୍ଟ କରିବାମାନେ ପୃଥିବୀପ୍ରତି ବିପଦର ସେତିକି ଆଶଙ୍କା ବୃଦ୍ଧିପାଇବା ନିଶ୍ଚିତ । ବିମାନର ସିଧାଯାତ୍ରା ଋଷର ରକେଟ ସ୍ଥାପନ କେନ୍ଦ୍ର ପରିଦର୍ଶନ ନିମନ୍ତେ ସାଇବେରିଆ ଅଭିମୁଖେ ।

ସୂର୍ଯ୍ୟ ଦେବତାଙ୍କ ଆଗମନ ସହିତ କଅଁଳିଆ ପ୍ରାତଃ ସୂର୍ଯ୍ୟର କିରଣ ଯେତେବେଳେ ପୃଥିବୀ ରାଣୀ ଉପରେ ବିଛେଇହୋଇ ପଡୁଥିଲା, ନିକଟବର୍ତ୍ତୀ ଗୀର୍ଜା, ମସଜିଦ ଓ ମନ୍ଦିରରୁ ଶୁଭୁଥିଲା ମଙ୍ଗଳ ଆରତୀର ଧ୍ୱନୀ' ଠିକ୍ ସେତିକିବେଳେ ବିମାନ ପୃଥିବୀର ବଛାବଛା ବୈଜ୍ଞାନିକ ଓ ନେତୃବୃନ୍ଦଙ୍କୁ ଧରି ଆକାଶକୁ ଉଠିଲା ଋଷ ଅଭିମୁଖେ ।

ସାଇବେରିଆର ତୁଙ୍ଗସ୍କା ଉତକ୍ଷେପଣ କେନ୍ଦ୍ର । ବିସ୍ତୀର୍ଣ୍ଣ ଜନମାନବଶୂନ୍ୟ ଏହି ରାଜ୍ୟରେ ଆକାଶକୁ ମୁଣ୍ଡଟେକି ଠିଆହୋଇ ରହିଛି ଉତ୍‌କ୍ଷେପଣ ଘାଟୀ ନୀରବରେ । ନିକଟରେ ଗବେଷଣା କେନ୍ଦ୍ର । ଅତୀତରେ ଋଷର ଅନେକ ରକେଟ ଉତ୍‌କ୍ଷେପଣ ସଫଳତାର ସହିତ କରାଯାଇଛି ଏହି କେନ୍ଦ୍ରରୁ । ମାତ୍ର ଏବେକାର କାର୍ଯ୍ୟକ୍ରମ ଯାହା ଏହି ସ୍ଥାନରୁ କାରାଯିବାକୁ ନିଷ୍ପତ୍ତି ଗ୍ରହଣ କରାଯାଇଛି, ସେଥିପାଇଁ ଏହି କେନ୍ଦ୍ରର ଗୁରୁତ୍ୱ ସର୍ବାଧିକ । ଏଠାରେ ପ୍ରାୟ ରହିବେ ୩ ହଜାର ବିଶ୍ୱର ବରିଷ୍ଠ

ବୈଜ୍ଞାନିକ, ସ୍ଥାପିତ ହେବ ଅନେକ ସୌଧ ମାତ୍ର ୧୫ ଦିନ ମଧ୍ୟରେ । ଏହା ବ୍ୟତୀତ ଧୂମକେତୁକୁ ପର୍ଯ୍ୟବେକ୍ଷଣ କରିବାକୁ ମଧ୍ୟ ଏଠାରେ ସ୍ଥାପନ କରାଯିବ ଏକ ଶକ୍ତିଶାଳୀ କ୍ୟାମେରା ସଂଲଗ୍ନ ଦୂରବୀକ୍ଷଣ ଯନ୍ତ୍ର । ଆଜିଠାରୁ ହିଁ କାର୍ଯ୍ୟ ଆରମ୍ଭ ହେବ । ପ୍ରତ୍ୟେକ ଦିନ ସେଠାରେ ଓହ୍ଲାଇବ ଶହ ଶହ ବିମାନ । ସେସବୁ ପୃଥିବୀର ବିଭିନ୍ନ ସ୍ଥାନରୁ ବୋହି ଆଣିବେ ପରମାଣୁ ଶକ୍ତିସଂପନ୍ନ ୟୁରାନିୟମ ଓ ବିଶେଷଜ୍ଞମାନଙ୍କୁ । ସବୁ ତତ୍‌କ୍ଷଣାତ ଆରମ୍ଭ କରିବାକୁ ହେବ । ଏ ସବୁ ବ୍ୟବସ୍ଥା ପାଇଁ ଉତ୍‌କ୍ଷେପଣ କେନ୍ଦ୍ର ଓ ଆଖପାଖ ଅଞ୍ଚଳର ଯାହାକିଛି ବିସ୍ତାର କରାଯିବା ଆବଶ୍ୟକ ସେ କାର୍ଯ୍ୟ ଯୁଦ୍ଧକାଳୀନ ଭିତ୍ତିରେ ଆରମ୍ଭ କରିବାକୁ ନିର୍ଦ୍ଦେଶ ଦିଆସରିଲାଣି ।

ଜନମାନସର ଚିହ୍ନ ନାହିଁ । ପ୍ରାୟ ହଜାର ବର୍ଗ କିଲୋମିଟର ଅଞ୍ଚଳରେ ବସତି ନାହିଁ । ପତ୍ନୀ ରୋଜାଲିନାଙ୍କ ହାତଧରି ଆଗଉଥିଲେ ଡେଭିଡ୍, ତାଙ୍କପାଇଁ ଉତ୍‌କ୍ଷେପଣ କେନ୍ଦ୍ରରେ ସ୍ଥାନିତ ବିଶ୍ରାମ କୋଠରୀ ଆଡେ । ମାତ୍ର ତାଙ୍କପାଇଁ ବିଶ୍ରାମ ନେବାକୁ ଆଉ ସମୟ ନାହିଁ । ୩ ଦିନ ହେବ ଦେହରୁ ପ୍ୟାଣ୍ଟ ସାର୍ଟ ଖୋଲାହୋଇ ନାହିଁ । ତଥାପି କ୍ଳାନ୍ତି ନାହିଁ, ଅବସାଦ ନାହିଁ । ପୃଥିବୀ ରକ୍ଷାର ଦାୟିତ୍ୱ ଯାହା ଉପରେ ସମ୍ପୂର୍ଣ୍ଣରୂପେ ନ୍ୟସ୍ତ, ଯାହାକୁ ସୁରକ୍ଷାର ଦାୟିତ୍ୱ ହସ୍ତାନ୍ତର କରି ପୃଥିବୀର କୋଟି କୋଟି ଲୋକ ନିଶ୍ଚିନ୍ତ ହୋଇଛନ୍ତି ସେ କଣ କେବେ ବିଶ୍ରାମ ନେଇପାରନ୍ତି ? ଶୟନେ, ସପନେ, ଜାଗରଣେ ଡେଭିଡ୍‌ଙ୍କର ଗୋଟିଏ ସ୍ୱପ୍ନ, ଗୋଟିଏ ଚିନ୍ତା, ଗୋଟିଏ ବକ୍ତବ୍ୟ, ଗୋଟିଏ ଲକ୍ଷ, ଗୋଟିଏ ଆନ୍ଦୋଳନ ତାହା ହେଲା ପୃଥିବୀକୁ ରକ୍ଷାକରିବାର ପ୍ରତିଶ୍ରୁତିବଦ୍ଧତା ।



# ଟୁଙ୍ଗସ୍କା ଉତ୍‌କ୍ଷେପଣ
# କେନ୍ଦ୍ରରେ ୨୪ ଘଣ୍ଟିଆ ଦିନ

ଟୁଙ୍ଗସ୍କାର ଏକଶହ ବର୍ଗ କିଲୋମିଟର ଅଞ୍ଚଳରେ ନିର୍ମାଣକାର୍ଯ୍ୟ ଚାଲିଥିଲା ଦିବାରାତ୍ରି । ବିଶ୍ୱର ବଛା ବଛା ସ୍ଥପତି, ଇଂଞ୍ଜିନିୟର ଲାଗିଥିଲେ ଗୋଟିଏ ସେକେଣ୍ଡ ମଧ୍ୟ ନଷ୍ଟ ନ କରି । ହଜାର ହଜାର ଉଜ୍ଜ୍ୱଳ ଆଲୋକ ସବୁବେଳେ ଜଳିରହି ରାତ୍ରିର ଆଗମନକୁ ଜଣାଇ ଦେଉଥିଲା । ସବୁବେଳେ କାର୍ଯ୍ୟକ୍ରମ ଭିତରେ ଦିନ ଓ ରାତ୍ରି କେତେବେଳେ ଆସୁଥିଲା ଓ ଯାଉଥିଲା ତାହା ଜଣାପଡୁ ନଥିଲା । ସତେ ଯେପରି ଟୁଙ୍ଗସ୍କାକୁ ରାତ୍ରି ଆସୁନଥିଲା । ୧୫ ଦିନ ପୂର୍ବରୁ ସମସ୍ତ ନିର୍ମାଣ କାର୍ଯ୍ୟ ସାରିବାକୁ ହେବ ଏହା ପରେ ନିର୍ମିତ ହେବ ବିଶ୍ୱର ସର୍ବଶ୍ରେଷ୍ଠ, ସର୍ବଶକ୍ତିମାନ ରକେଟ ଏବଂ ଏହାର ନିର୍ମାଣ କାର୍ଯ୍ୟରେ ପୃଥିବୀର ସର୍ବଶ୍ରେଷ୍ଠ ଜ୍ଞାନକୌଶଳ ବିନିଯୋଗ କରିବାକୁ ହେବ । ଏଥିସହିତ ପୃଥିବୀର ରକ୍ଷା ଓ ବିଲୟ ଯେତେବେଳେ ଜଡିତ ସେତେବେଳେ ଏହାର ନିର୍ମାଣବେଳେ ପ୍ରତ୍ୟେକ ପର୍ଯ୍ୟାୟରେ ସାବଧାନତା ଅବଲମ୍ବନ କରିବାକୁ ହେବ କାରଣ ଯଦି ନିର୍ମାଣବେଳେ ସାମାନ୍ୟ ଦୋଷତ୍ରୁଟି ରହିଯାଏ ତେବେ ଏଥିରେ ବିସ୍ଫୋରଣ ଘଟି ପୃଥିବୀର ଅନେକ ଅଂଶ ଧ୍ୱଂସ ପାଇଯିବା ସହିତ ବାୟୁମଣ୍ଡଳ ବିଷାକ୍ତ ହୋଇଯିବାର ସମ୍ଭାବନାକୁ ଏଡାଇ ଦିଆଯାଇପାରେ ନାହିଁ । ୨୪ ଘଣ୍ଟାକାଳ ଲାଗିଥିଲେ ହଜାର ହଜାର ବୁଲଡୋଜର, ଭାରି ନର୍ମାଣଯନ୍ତ୍ର । କେହି କାହାକୁ ନିର୍ଦ୍ଦେଶ ଦେବାକୁ ନାହିଁ, କେହି କାମ କରିବାକୁ ଅନୁରୋଧ କରିବାର ଆବଶ୍ୟକତା ମଧ୍ୟ ନାହିଁ । ସତେ ଯେପରି ସମସ୍ତକାର୍ଯ୍ୟ ସ୍ୱୟଂ ଭାବେ ଚାଲିଛି ।

ଯୋଜନା ଅନୁସାରେ ପୃଥିବୀ ପୃଷ୍ଠରେ ମହଜୁଦ ଥିବା ସମୁଦାୟ ୟୁରାନିୟମ, ପ୍ଲୁଟୋନିୟମର ପ୍ରାୟ ଶତକଡା ୨୫ଭାଗ ଏହି କେନ୍ଦ୍ରକୁ ଖୁବ ଶୀଘ୍ର ଅଣାଯାଇ ଏଠାରେ ଶକ୍ତିଶାଳୀ ପରମାଣୁ ବୋମା ନିର୍ମାଣ କରାଯିବ । ଯେଉଁ ପରମାଣୁ ଶକ୍ତିକୁ ପୃଥିବୀର ଅନେକ ଦେଶ ଶାନ୍ତି କାର୍ଯ୍ୟରେ ନିଜର ଉନ୍ନୟନ ପାଇଁ ବ୍ୟବହାର କରି

ଆସିଛନ୍ତି ଓ କେତେକ ପ୍ରଳୟଙ୍କର ପରମାଣୁ ବୋମା ତିଆରିକରି ବିଶ୍ୱରେ ପ୍ରଳୟର ତାଣ୍ଡବଲୀଳା ସୃଷ୍ଟି କରିଛନ୍ତି ସେହି ବିଭୀଷିକମୟ ପରମାଣୁ ଶକ୍ତିକୁ ହିଁ ବର୍ତ୍ତମାନ ପୃଥିବୀ ରକ୍ଷା କାର୍ଯ୍ୟରେ ବ୍ୟବହାର କରିବା ବ୍ୟତୀତ ଆଉ ଅନ୍ୟ କୌଣସି ବିକଳ୍ପ ନାହିଁ ବୈଜ୍ଞାନିକମାନଙ୍କ ନିକଟରେ । ଏହାର ଅମାପ ଶକ୍ତି କଣ ମହକାଶର ରାକ୍ଷସ ଧୂମକେତୁ କବଳରୁ ପୃଥିବୀକୁ ରକ୍ଷା କରିପାରିବ ନାହିଁ ? ଏହିଭଳି ଚିନ୍ତା ଅନେକ କରୁଥିଲେ ମଧ୍ୟ ଏହା ବ୍ୟତୀତ ପୃଥିବୀ ରକ୍ଷାର ଆଉ ଯେ କୌଣସି ବାଟ ନାହିଁ । ତେଣୁ ପରମାଣୁ ବୋମା କାର୍ଯ୍ୟକ୍ରମ ହିଁ ଏହି ସମସ୍ୟାର ସମାଧାନ କରିବାପାଇଁ ପ୍ରଥମ ଓ ଶେଷ କାର୍ଯ୍ୟକ୍ରମ ।

ପ୍ରତି ମୁହୂର୍ତ୍ତରେ ଏହି କେନ୍ଦ୍ରରେ ଓହ୍ଲାଉଥିଲା ଗୋଟିଏ ପରେ ଗୋଟିଏ ପରିବହନ ବିମାନ । ଏସବୁ ଉଡିଆସୁଥିଲା ପୃଥିବୀର ବିଭିନ୍ନ ଅଞ୍ଚଳରୁ । ସେତେବେଳକୁ ପୃଥିବୀର ସବୁ ଦେଶର ପ୍ରଧାନମନ୍ତ୍ରୀ ତଥା ରାଷ୍ଟ୍ର ମୁଖ୍ୟମାନଙ୍କୁ ଏହି ଦାରୁଣ ବାର୍ତ୍ତା ଜଣାଇ ଦିଆଯାଇ ସାରିଥିଲା ଏବଂ ଏହାକୁ ଗୋପନୀୟ ରଖିବାକୁ ପରାମର୍ଶ ଦିଆଯାଇଥିଲା । ସବୁଦେଶ ନିଜର ସମସ୍ତ ଶକ୍ତି ପୃଥିବୀ ରକ୍ଷା ଯୋଜନାରେ ଖର୍ଚ୍ଚ କରିବାକୁ ମଧ୍ୟ ନିର୍ଦ୍ଦେଶ ଦିଆଯାଇଥିଲା । ଉତ୍କ୍ଷେପଣ କେନ୍ଦ୍ରରେ ଶହ ଶହ ଡ୍ରେଜର ଓ ଆର୍ଥ ମୁଭର ଯନ୍ତ୍ର ଦିନରାତ୍ରି କାର୍ଯ୍ୟକରି ଭୂମିକୁ ସମତଳ କରିବା ସହ ବିଛାଇ ହୋଇପଡିଥିବା ବରଫ ଖଣ୍ଡକୁ ସମାନ କରିବା କାର୍ଯ୍ୟରେ ଲାଗିଥିଲା । ସେଠାରେ ଅନେକ ଅସ୍ଥାୟୀ ଗୃହ ନିର୍ମାଣ କରିବା କାର୍ଯ୍ୟରେ ଲାଗିଯାଇଥିଲେ ଜାପାନୀ ଓ ଚ଼ୀନର ଆର୍କିଟେକ୍ଟ । ଏହି ଘର ଗୁଡିକରେ ଅସ୍ଥାୟୀଭାବେ ବୈଜ୍ଞାନିକମାନେ ରହି ଗବେଷଣା କାର୍ଯ୍ୟ ଆରମ୍ଭ କରିଦେଇଥିଲେ । ବିଶ୍ୱର ବିଭିନ୍ନ ଅଞ୍ଚଳରୁ ଆସୁଥିବା ୟୁରାନିୟମର ସଂରକ୍ଷଣ ବ୍ୟବସ୍ଥା ମଧ୍ୟ ଅତି ସତର୍କତାର ସହିତ କରାଯାଉଥିଲା । ଉତ୍ତର ଗୋଲାର୍ଦ୍ଧରେ ଡୁଙ୍ଗସ୍କା ଅଞ୍ଚଳରେ ସେତେବେଳେ ଗ୍ରୀଷ୍ମ ଋତୁ ଥିବାରୁ ବିଶେଷ ବରଫ ପଡିବାର ସମ୍ଭାବନା ନଥିଲେ ମଧ୍ୟ ଉତ୍ତର ଗୋଲାର୍ଦ୍ଧର ଖୁବ ନିକଟରେ ଥିବାରୁ ବେଳେ ବେଳେ ବରଫ ପଡୁଥିଲା । ଏଠାରେ ଏକ ବୃହତ୍ତ ଟେଲିସ୍କୋପ ନିର୍ମାଣ କାର୍ଯ୍ୟ ଏକ ସଂଗେ ଆରମ୍ଭ ହୋଇ ସାରିଥିଲା ଏବଂ ଏହାକୁ ସଞ୍ଚାଳନ କରିବାକୁ ଏକ ସ୍ୱତନ୍ତ୍ର କମ୍ପ୍ୟୁଟର ପ୍ରକୋଷ୍ଠ ନିର୍ମାଣ କାର୍ଯ୍ୟରେ ଲାଗିଥିଲେ ହଜାର ହଜାର ଶ୍ରମିକ, ଇଞ୍ଜିନିୟର ଓ ବୈଜ୍ଞାନିକ ପରାମର୍ଶଦାତା । ସମୟ ଆଉ ହାତରେ ନଥିଲା ତେଣୁ କେବଳ କାନ୍ଥ ଉଠାଇଦେଇ ତାର ଭିତର ଅଂଶକୁ ମୋଟା ପଟିଲ ବା କାର୍ଡବୋର୍ଡ

କିମ୍ବା ସନମାଇକା ଦିଆଯାଇ ଆବୃତ୍ତ କରିଦିଆଯାଇ କାର୍ଯ୍ୟକ୍ରମ ଉପଯୋଗୀ କରାଯାଉଥିଲା । ନିର୍ଦ୍ଧାରିତ ଯୋଜନା ଅନୁସାରେ ସମସ୍ତ ନିର୍ମାଣ କାର୍ଯ୍ୟକ୍ରମ ୧୫ଦିନ ମଧ୍ୟରେ ହିଁ ସାରିବାକୁ ହେବ ଓ ୧୬ ଦିନ ସକାଳୁ ଆରମ୍ଭ ହେବ ବିଶ୍ୱର ବୃହତ୍ତ ରକେଟ ତଥା ପରମାଣୁ ବୋମାର ନିର୍ମାଣ କାର୍ଯ୍ୟ । ଏହି ସବୁ କାର୍ଯ୍ୟକ୍ରମ ପ୍ରତ୍ୟେକ୍ଷଭାବେ ଡେଭିଡ୍ ପର୍ଯ୍ୟବେକ୍ଷଣ କରୁଥିଲେ । ଖୁବଶୀଘ୍ର ନୂତନ ବିମାନ ଅବତରଣ କେନ୍ଦ୍ର ସ୍ଥାପନ କରାଗଲାଣି । ଅନେକ ସମୟରେ ବିଶ୍ୱର ନେତୃବୃନ୍ଦ ଏହି ସ୍ଥାନକୁ ଆସି ଡେଭିଡ୍‌ଙ୍କ ସହ ଆଲୋଚ଼ନା କରିବା ସହ କାର୍ଯ୍ୟକ୍ରମର ଅଗ୍ରଗତି ପର୍ଯ୍ୟବେକ୍ଷଣ କରିଯାଉଛନ୍ତି । ୧୦ ଦିନ ଅତିକ୍ରାନ୍ତ ହେଲାଣି, ହାତରେ ଆଉ ୫ ଦିନ' ତାପରେ ବୋମା ନିର୍ମାଣ କାର୍ଯ୍ୟ ଆରମ୍ଭ..... ।



# ଆକାଶରେ ଜଳନ୍ତା ଦାନବ

ଏବେ ପ୍ରତ୍ୟେକ ଦିନ ପାହାନ୍ତିଆ ପ୍ରହରକୁ ପୃଥିବୀବାସୀ ସାଧାରଣ ଜନତା ଏକ ଅଲୌକିକ ଦୃଶ୍ୟ ଆକାଶରେ ଦେଖି ଆହ୍ଲାଦିତ ହେଉଛନ୍ତି । ବିରାଟ ପୁଚ୍ଛଥିବା ଠିକ ପହଁରା ଆକୃତିର ବୃହତ୍ତ ଧୂମକେତୁର ଜ୍ୱଳନ୍ତ ଆଲୋକ ଶିଖା ଅନ୍ଧକାର ରାତ୍ରିକୁ ଉଜ୍ଜ୍ୱଳ ରକ୍ତିମ ଆଲୋକରେ ଉଦ୍‌ଭାସିତ କରି ପ୍ରତିଭାତ ହେଲାଣି । କି ଅପରୂପ ଏହାର ଦୃଶ୍ୟ । ଠିକ ପହଁରା ଆକୃତିର ତଳଆଡୁ ଉପରକୁ ବିଚ୍ଛୁରିତ ହୋଇ ଆକାଶର ଅନେକ ଅଂଶକୁ ଏହା ମାଡି ରହିଛି । ପାହାନ୍ତା ପ୍ରହରରୁ ବିଶ୍ୱର ଅନେକ ଲୋକ ଜାଗ୍ରତ ରହି ଏହି ବୃହତ୍ ଧୂମକେତୁର ରୂପ ଦେଖୁଛନ୍ତି । ଧୂମକେତୁ ହିଁ ପ୍ରଳୟ , ଅଶୁଭର ସଙ୍କେତ ବୋଲି ଆଲୋଚନା କରୁଛନ୍ତି । ଅନେକ ଧୂମକେତୁର ଆବିର୍ଭାବ ସହ ଦେବ ମନ୍ଦିରରେ ପୂଜାପାଠ ଆରମ୍ଭ କରିଦେଇ ସାରିଲେଣି । ବିଶ୍ୱର ମଙ୍ଗଳପାଇଁ, ଧୂମକେତୁର ଆବିର୍ଭାବଜନିତ ଅଶୁଭରୁ ପୃଥିବୀକୁ ରକ୍ଷାକରିବାକୁ ଅନେକ ସ୍ଥାନରେ ପୂଜାପାଠ ସାଙ୍ଗକୁ କେତେକ ଏହା ଉଦ୍ଦେଶ୍ୟରେ ମଧ୍ୟ ପୂଜା କାର୍ଯ୍ୟ କରୁଛନ୍ତି । ଏହି ସାଧାରଣ ଜନତା କିନ୍ତୁ ଜାଣନ୍ତି ନାହିଁ ଯେ ଏହି ଧୂମକେତୁ ହିଁ ପୃଥିବୀବାସୀଙ୍କ ପାଇଁ ପ୍ରଳୟର ସୂତ୍ରଧର ହୋଇ ଆସୁଛି ବୋଲି । ପୂର୍ବରୁ ଯେତେଥର ଧୂମକେତୁ ପୃଥିବୀର ଆକାଶରେ ଦେଖାଦେଇଛି ତାହା କିନ୍ତୁ ଏବର ଧୂମକେତୁ ଭଳି ନୁହେଁ । କିଛି ଦିନ ଏହା ଦୃଶ୍ୟହେବାପରେ ଆସ୍ତେ ଆସ୍ତ ଏହାର ଉଜ୍ଜ୍ୱଳତା କମିଯାଏ, ଏହା ନିଷ୍ପ୍ରଭ ହୋଇଯାଏ ଓ ଶେଷରେ ପୃଥିବୀ ଆକାଶରୁ ଉଭେଇଯାଏ ମାତ୍ର ଏବେ ଯେଉଁ ଧୂମକେତୁ ପୃଥିବୀ ଆକାଶରେ ଦେଖାଦେଇଛି ତାର ଉଜ୍ଜ୍ୱଳତା କମୁ ନାହିଁ, ଆକାର କ୍ରମେ ବୃଦ୍ଧିପାଇ ଦିଗବଳୟରୁ ଆକାଶର ଅନେକ ଅଞ୍ଚଳକୁ ବ୍ୟାପିଗଲାଣି । ଏହାର କାରଣ କଣ ? ବହୁ ଦିନରୁ ଏହି ଧୂମକେତୁ ଆକାଶରେ ଦେଖାାଦେଇଥିଲେ ମଧ୍ୟ ଏହାର ଲିଭିବାର ଆଶା ଦେଖାଯାଉ ନ ଥିବାରୁ ଲୋକେ ବ୍ୟସ୍ତ ହୋଇପଡିଲେଣି । ହେଲେ ସାଧାରଣ ଲୋକଙ୍କ ମନରେ ଉଠୁଥିବା ପ୍ରଶ୍ନର ଉତ୍ତର ଦେବ କିଏ ? କି ଉତ୍ତର ବା ଜଣାଇ ଦିଆଯିବ ସେମାନଙ୍କୁ । ଯଦି ପୃଥିବୀ ଧ୍ୱଂସ ହେବାକୁ ଯାଉଛି ବୋଲି ଗାଁ ଗହଳିର ସାଧାରଣ ଜନତା ଜାଣନ୍ତି ତେବେ କଣ ଆଉ ସେମାନଙ୍କୁ

ସମ୍ଭାଳାଯାଇ ପାରିବ ! ହୁଏତ ସାରା ବିଶ୍ୱରେ ସୃଷ୍ଟି ହୋଇଯିବ ଗଣ୍ଡଗୋଳ, ବିଶୃଙ୍ଖଳା, ଆହୁରି କେତେ କ'ଣ । ତେଣୁ ଏହି ତଥ୍ୟ ସାଧାରଣ ଜନତାଙ୍କୁ ନ ଜଣାଇ ସେମାନଙ୍କଠାରୁ ଲୁଚାଇ ରଖାଯାଇଛି ।

ଏଇ କେତେଦିନ ହେବ କିନ୍ତୁ ସାଧାରଣ ଲୋକେ ଗୋଟିଏ କଥା ଲକ୍ଷକରି ଆସୁଛନ୍ତି ତାହା ହେଲା ପ୍ରତ୍ୟେକ ଦେଶରେ ସତେ ଯେପରି ସବୁ କାର୍ଯ୍ୟକ୍ରମ ବନ୍ଦ ହୋଇଯାଇଛି । ଅନେକ ଦେଶରେ ନୂତନ ରାଷ୍ଟ୍ରମୁଖ୍ୟ ନିର୍ବାଚନ କାର୍ଯ୍ୟକ୍ରମ ପାଇଁ ଅନୁଷ୍ଠିତ ହେବାକୁ ଥିବା ନିର୍ବାଚନ କାର୍ଯ୍ୟକ୍ରମ ଇତିମଧ୍ୟରେ ବାତିଲ ହୋଇଯାଇଛି । ସବୁଆଡେ ନୀରବ, ନିସ୍ତବ୍ଧ' ଏକ ଅଜଣା ବିପତ୍ତିନେଇ ସତେ ଯେପରି ସମସ୍ତେ ଆତଙ୍କିତ । ସାରା ବିଶ୍ୱରେ ଏମରଜେନ୍ସି ଜାରୀ କରାଯାଇଥିବାରୁ ଏହି ନିଗୁଢ଼ ତଥ୍ୟ ବିଷୟରେ ଅଳ୍ପ କେତେକ ଲୋକ ଜାଣିପାରିଥିଲେ ମଧ୍ୟ ସାଧାରଣଙ୍କ ଠାରୁ ଏହା ଲୁଚାଇ ରଖାଯାଇଛି । ମାତ୍ର କେତେଦିନ ଯାଏ ଏହାକୁ ଲୋକଙ୍କଠାରୁ ଲୁଚାଇ ରଖାଯାଇପାରିବ । ପ୍ରକୃତି ଯେତେବେଳେ ଆପଣାଛାଏଁ ତଥ୍ୟ ପ୍ରକାଶ କରିବାକୁ ଆଗେଇ ଆସିବ ସେତେବେଳେ ଲୋକଙ୍କୁ ଆଉ ଜଣାଇବା ଦରକାର ନାହିଁ । ଆପଣାଛାଏଁ ସେମାନେ ଏସବୁ ଜାଣିପାରିବେ । ଏବେ ସେହି ଅବସ୍ଥା ଆସି ପହଞ୍ଚିଲାଣି..... ।



# ପୃଥିବୀରେ ଉତ୍ତାପ ବୃଦ୍ଧି

ଏଇ କେତେଦିନ ହେବ ସାରା ପୃଥିବୀ ପୃଷ୍ଠରେ ଏକ ଅସ୍ୱାଭାବିକ ଅବସ୍ଥା ଦେଖାଦେଲାଣି । ଦିନ ଓ ରାତ୍ରିର ଉତ୍ତାପ କ୍ରମେ ଦିନପରେ ଦିନ ବୃଦ୍ଧି ପାଇବାରେ ଲାଗିଛି । ସମୁଦ୍ରର ଅବସ୍ଥା ମଧ୍ୟ ଉଦ୍‌ବେଗଜନକ ହୋଇଛି । ଯେତେବେଳେ ଦେଖ ସମୁଦ୍ରର ଜୁଆର କମୁନାହିଁ, ସବୁବେଳେ ଉତ୍ତଳ ଜଳରାଶି, ଅଥଚ ଜଳଭାଗରେ ଉଠୁଛି ଅନେକ ବଡ ବଡ ଲହରୀ । ଏସବୁ ଭୀଷଣ ଶବ୍ଦକରି ଆନ୍ଦୋଳିତ ହୋଇ ଏପରି ଅସ୍ଥିର ହୋଇଉଠୁଛି ସତେଯେପରି ମନେ ହେଉଛି ସାଗରର ଭୀମ, ପ୍ରଚଣ୍ଡ ରୂପ ସ୍ଥଳଭାଗ ଆଡକୁ ମାଡିଆସି ଏହାକୁ ଗ୍ରାସକରି ଯିବ ।' ଅନେକ ସ୍ଥାନରେ ସାଗରବେଳା ବୁଡିବାକୁ ବସିଲାଣି, କରାଳ ଅଶାନ୍ତ ଲହରୀ କ୍ରମେ ସାଗରବେଳା ଅତିକ୍ରମକରି ସମତଳ ଅଞ୍ଚଳର ଅନେକ ଭାଗକୁ ବୁଡାଇଦେଇ କ୍ରମେ କ୍ରମେ ଆଗେଇ ଚାଲିଛି ଅଧିକ ସ୍ଥଳଭାଗକୁ ନିଜ ବକ୍ଷକୁ ଟାଣିନେବା ଉଦ୍ଦେଶ୍ୟରେ, ସରକାରଙ୍କ ତରଫରୁ ଇତି ମଧ୍ୟରେ ସାଗର କୂଳକୁ ନ ଯିବାକୁ ଏବଂ ମତ୍ସ୍ୟଉତ୍ପାଦନ ଦୁଇମାସ ପାଇଁ ସଂପୂର୍ଣ୍ଣରୂପେ ବନ୍ଦ ରଖିବାକୁ ମତ୍ସ୍ୟଜୀବୀମାନଙ୍କୁ ନିର୍ଦ୍ଦେଶ ଦିଆଯାଇସାରିଲାଣି । ଏହି ଦୁଇମାସ ଭିତରେ ସାମୁଦ୍ରିକ ଅବସ୍ଥା ପ୍ରଚଣ୍ଡ ହେବାର ଆଶାଥିବାରୁ ଦେଶ ବିଦେଶର ସମସ୍ତ ଜହାଜ ଚଳାଚଳ ଉପରେ ମଧ୍ୟ କଟକଣା ଜାରୀ କରାଯାଇଛି । ସମସ୍ତ ଜଳ ଜାହାଜଗୁଡ଼ିକ ବନ୍ଦରାଞ୍ଚଳରେ ଆଶ୍ରୟ ନେଇଛନ୍ତି । ପରବର୍ତ୍ତୀ ନିର୍ଦ୍ଦେଶ ନ ପାଇବା ଯାଏ ଏ ସବୁର ଚଳାଚଳ ଉପରେ ନିଷେଧାଦେଶ ଜାରି ହୋଇଛି । ଇତିମଧ୍ୟରେ ବାୟୁମଣ୍ଡଳର ଉତ୍ତାପ ବୃଦ୍ଧପାଇଁ ଉତ୍ତରମେରୁ ଓ ଦକ୍ଷିଣମେରୁ ଅଞ୍ଚଳରେ ଗଦାହୋଇ ରହିଥିବା ହଜାର ହଜାର ମାଇଲର ବିସ୍ତୀର୍ଣ୍ଣ ବରଫ ଗଦା କ୍ରମେ ତରଳିବାକୁ ଆରମ୍ଭ କଲାଣି । ଯୁଦ୍ଧକାଳୀନ ଭିତ୍ତିରେ ଫିଜି ଦ୍ୱୀପପୁଞ୍ଜ, ଲାକ୍ଷାଦ୍ୱୀପ, ମାଳଦ୍ୱୀପ ଭଳି ଖାଲୁଆ ଅଞ୍ଚଳରୁ ଲୋକମାନଙ୍କୁ ଉଦ୍ଧାକରି ଅଣାଯାଇ ନିକଟବର୍ତ୍ତୀ ଦେଶରେ ଶିବିର ସ୍ଥାପନକରି ରଖାଯିବାର ବ୍ୟବସ୍ଥା କରାଗଲାଣି । ଏ ପ୍ରକାର ଏକ ବିପତ୍ତି ପୃଥିବୀବାସୀ ପ୍ରଥମ ଥର ପାଇଁ ଅନୁଭବ କରୁଥିବାରୁ ଏହାର ବିଭୀଷିକାର ମାତ୍ରା କେତେ ତାହା ଜାଣିବାର ଉପାୟ ସତେ ଯେପରି କାହା ନିକଟରେ ନାହିଁ ।

ଆଗକୁ ଆଗକୁ କଣ ସବୁ ଘଟିବାକୁ ଯାଉଛି ସେ ବିଷୟରେ ପୃଥିବୀର ବଡବଡ ବୈଜ୍ଞାନିକମାନେ ମଧ୍ୟ କିଛି ଅନୁମାନ କରିପାରୁ ନାହାଁନ୍ତି । ଧୂମକେତୁର ଆଗମନ ସହ ପୃଥିବୀର ବାୟୁମଣ୍ଡଳର ଉତ୍ତାପ ବୃଦ୍ଧି ସହ ଏଭଳି ପ୍ରାକୃତିକ ବିଭୀଷିକା ଯେ ମାଡିଆସିବ ଏ ବିଷୟରେ ପୂର୍ବରୁ କେହି ଚିନ୍ତା କରିନଥିବା ବେଳେ ଅପ୍ରତ୍ୟାଶିତଭାବେ ଏହି ବିପତ୍ତି ସମସ୍ତଙ୍କ ପାଇଁ ବଡ ସମସ୍ୟା ଆଣି ଦେଇଛି । ଏବେ ଏସବୁ ବିପତ୍ତିର ସୃଷ୍ଟିନେଇ ଲୋକଙ୍କ ମନରେ ଉଠୁଥିବା ପ୍ରଶ୍ନର ଉତ୍ତର ସବୁ ଲୋକଙ୍କୁ ଜଣାଇବାକୁ ହେବ, ସେମାନଙ୍କୁ ଆଗାମୀ ବିପଦ ବିଷୟରେ ସଚେତନ କରିବାକୁ ହେବ ।

ବୈଜ୍ଞାନିକ ଡେଭିଡ୍ ଇତିମଧ୍ୟରେ ଅନେକ ବୈଠକରେ ବିଭିନ୍ନ ଦେଶର ରାଷ୍ଟ୍ରମୁଖ୍ୟଙ୍କ ସହ ମିଳିତହୋଇ ସେମାନଙ୍କୁ ପୃଥିବୀର ପରିବର୍ତ୍ତିତ ଅବସ୍ଥାରେ ଲୋକଙ୍କୁ ସମ୍ଭାଳିବାର ଦାୟିତ୍ୱ ବହନ କରିବାକୁ ନିର୍ଦ୍ଦେଶ ଦେଲେଣି । ସେମାନଙ୍କ ଉପରେ ଯେଉଁ ଦାୟିତ୍ୱ ନ୍ୟସ୍ତ କରାଯାଇଛି ସେହି ଗୁରୁଦାୟିତ୍ୱ ଛଡା ଅନ୍ୟକିଛି ସେମାନଙ୍କୁ ନ ଜଣାଇବାକୁ ସେ କଡା ନିର୍ଦ୍ଦେଶ ଦେଇସାରିଛନ୍ତି କାରଣ ଏହା ହେଲେ ସବୁ ଗଣ୍ଡଗୋଳ ହୋଇଯିବାର ସମ୍ଭାବନା ଓ ପୃଥିବୀକୁ ରକ୍ଷାକରିବା ଯୋଜନାର ସଫଳତା ନେଇ ପ୍ରଶ୍ନବାଚୀ ସୃଷ୍ଟି ହୋଇପାରେ । ତଥାପି ପୃଥିବୀ ରକ୍ଷା ଯୋଜନା କାର୍ଯ୍ୟକ୍ରମରେ ଏକ ଶାଖା ଖୋଲି ସେଥିରେ କେତେଜଣ ବୈଜ୍ଞାନିକଙ୍କୁ ନିଯୁକ୍ତ କରିଥିଲେ ଡେଭିଡ୍ । ଧୂମକେତୁ କ୍ରମେ ପୃଥିବୀର ପାଖେଇ ଆସିବାବେଳେ ସୃଷ୍ଟି ହେଉଥିବା ପ୍ରାକୃତିକ ବିଭୀଷିକାରୁ ଲୋକମାନଙ୍କୁ କିପରିଭାବେ ସୁରକ୍ଷା ପ୍ରଦାନ କରାଯାଇ ବଞ୍ଚାଇ ରଖାଯାଇପାରିବ ସେ ବିଷୟରେ ଏହି ଶାଖା ବିଭିନ୍ନ ରାଷ୍ଟ୍ରମୁଖ୍ୟମାନଙ୍କୁ ପରାମର୍ଶ ଦେବାର ହିଁ ସ୍ଥିର ହୋଇସାରିଛି ।



# ରକେଟ ନିର୍ମାଣର ଶୁଭାରମ୍ଭ

ଇତିମଧ୍ୟରେ ନିର୍ଦ୍ଧାରିତ ୧୫ ଦିନ ଅତିକ୍ରାନ୍ତ ହୋଇସାରିଲାଣି ତଥାପି ରକେଟ ନିର୍ମାଣସ୍ଥଳୀ କାର୍ଯ୍ୟ ସରିନାହିଁ । ଡେଭିଡ୍‌ଙ୍କ ମୁଣ୍ଡ ଆଉ କାମ କରୁ ନ ଥିଲା । ଏପରି ଡେରିହେଲେ ଆଉ ରକ୍ଷାନାହିଁ । ପୃଥିବୀକୁ ରକ୍ଷା କଣ ସମ୍ଭବ ହେବ ନାହିଁ ? ସେ ନିର୍ମାଣ ସ୍ଥଳରେ ନିଜେ ଯାଇ ପହଞ୍ଚିଲେ । ସେଠାରେ ସ୍ଥାପିତ ଏକ ମାଇକ୍ରୋଫୋନରେ ସେ ଚିତ୍କାର କଲେ । ନିଜେ ଯାଇ ଇଞ୍ଜିନିୟରମାନଙ୍କ ସହ ମିଶିଗଲେ ଏବଂ ସଂଯୋଜନା କାର୍ଯ୍ୟକୁ ତ୍ୱରାନ୍ୱିତ କଲେ । ଡେଭିଡ୍ ନିଜେ କାମ କରୁଥିବାର ଦେଖି ସମସ୍ତଙ୍କର ପ୍ରେରଣା ବଢ଼ିଗଲା । ଆଜି ନିର୍ମାଣ କାର୍ଯ୍ୟ ଆରମ୍ଭ ହେବାର ୧୭ତମ ଦିବସ । ନିର୍ଦ୍ଧାରିତ ସମୟଠାରୁ ଦୁଇ ଦିନ ଡେରି । ଆଜି ଯେପରି ହେଲେ ନିର୍ମାଣ କାର୍ଯ୍ୟ ସାରିବାକୁ ହେବ । ଡେଭିଡ୍‌ଙ୍କ କଡା ନିର୍ଦ୍ଦେଶ ଅକ୍ଷରେଅକ୍ଷରେ ପାଳିତ ହେଲା । ନିର୍ମାଣ କାର୍ଯ୍ୟ ସେହିଦିନ ମଧ୍ୟରାତ୍ରି ସୁଦ୍ଧା ଶେଷ ହେଲା ।

ଏହାପରେ ଆରମ୍ଭ ହେଲା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ପରମାଣୁ ଅସ୍ତ୍ର ବୋହିନେଇ ପାରୁଥିବା ବୃହଦ୍ ରକେଟର ନିର୍ମାଣ କାର୍ଯ୍ୟ । ତା' ପରଦିନ ଏହି କାର୍ଯ୍ୟର ଶୁଭାରମ୍ଭ କରାଗଲା । ଏଥି ସହିତ ବୃହଦ୍ ପରମାଣୁ ବୋମାର ନିର୍ମାଣକାର୍ଯ୍ୟ ମଧ୍ୟ ଆରମ୍ଭ ହେଲା । ହଜାରହଜାର କୃତବିଦ୍ୟ ପରମାଣୁ ଇଞ୍ଜିନିୟର ନିଜର ଜୀବନକୁ ବାଜି ଲଗାଇ ନିଜର ସମସ୍ତ ଜ୍ଞାନକୌଶଳକୁ ପ୍ରୟୋଗକରି ଏହି ନିର୍ମାଣ କାର୍ଯ୍ୟରେ ଦିବାରାତ୍ରି ଲାଗିଥିଲେ । ସେମାନଙ୍କପାଇଁ ପାଣିପାଗର ପରିବର୍ତ୍ତନ କୌଣସି ପ୍ରତିବନ୍ଧକ ଆଣିପାରୁ ନଥିଲା । ଖରା ସେମାନଙ୍କୁ କାଟୁ ନଥିଲା, ବର୍ଷା ସେମାନଙ୍କୁ ଜଣାପଡୁ ନଥିଲା, ନିଦ୍ରା ସେମାନେ କେବେ ଠାରୁ ଭୁଲିସାରିଥିଲେ - ସେମାନଙ୍କର ଲକ୍ଷ ଏକ, ସାଧନା ଏକ । ମଝିରେ ମଝିରେ ଡେଭିଡ୍ ନିଜେ ସବୁ ଅଞ୍ଚଳ ବୁଲି ପ୍ରତ୍ୟେକ ପର୍ଯ୍ୟାୟ କାର୍ଯ୍ୟକୁ ଅନୁଶୀଳନ କରୁଥିଲେ, ସମସ୍ତଙ୍କୁ ପ୍ରେରଣା ଦେଇ ଚାଲିଥିଲେ । ବୈଜ୍ଞାନିକମାନେ ହିଁ ଶେଷରେ ସଫଳହେବେ ଏ ପ୍ରକାର ଆଶ୍ୱାସନା ବାଣୀ ସମସ୍ତଙ୍କୁ ଶୁଣାଉଥିଲେ ।

ଇତିମଧ୍ୟରେ ରକେଟର ସ୍ଥାପନ କେନ୍ଦ୍ର ନିମ୍ନ ଭାଗରେ ଜଳର ଭଣ୍ଡାର ସ୍ଥାପନ କାର୍ଯ୍ୟ ଆରମ୍ଭ ହୋଇସାରିଲାଣି । ନିକଟବର୍ତ୍ତୀ ଏକ ମଧୁର ଜଳ ହ୍ରଦରୁ ଦିବାରାତ୍ରି ପାଣି ଅଣାଯାଇ ଏହି ବୃହତ୍‌କାୟ କୃତିମ ହ୍ରଦକୁ ପୂର୍ଣ୍ଣ କରାଯିବା କାର୍ଯ୍ୟ ଚାଲିଛି କାରଣ ରକେଟ ଆକଶକୁ ଉତ୍‌କ୍ଷେପିତ ହେବାବେଳେ ଜାଳେଣୀ ଦ୍ୱାରା ଯେଉଁ ପ୍ରଚଣ୍ଡ ଉତ୍ତାପ ସୃଷ୍ଟି ହେବ ନିମ୍ନ ଭାଗରେ ଥିବା ଜଳ ହିଁ ସେହି ପ୍ରଚଣ୍ଡ ଉତ୍ତାପକୁ ସହି ବାଷ୍ପୀଭୂତ ହେବା ସହ ସେଠାକାର ବିସ୍ଫୋରଣକୁ ରକ୍ଷା କରିବ । ଲକ୍ଷ ଲକ୍ଷ ଟନ ଶକ୍ତିର ପ୍ରଗଳ୍‌ଭ ଉତ୍ସ ୟୁରାନିୟମ ଆସି ଗଦା ହେଲାଣି, ୟୁରାନିୟମ ସହ ପ୍ଲୁଟୋନିୟମ ମଧ୍ୟ ବିଭିନ୍ନ ଦେଶରୁ ଆସି ପହଞ୍ଚି ସାରିଲାଣି । ଏହାକୁ ଅତ୍ୟନ୍ତ ସୁରକ୍ଷିତଭାବେ ରକେଟର ଅଗ୍ରଭାଗରେ ରଖିବାର ବ୍ୟବସ୍ଥା କରାଗଲାଣି । ଏପରି ବିଶାଳକାୟ ରକେଟ ନିର୍ମାଣ ପୂର୍ବରୁ କେବେ ପୃଥିବୀ ପୃଷ୍ଠରେ ହୋଇ ନଥିଲା କିମ୍ବା ହେବାର ଆଶା ନାହିଁ । ଆମେରିକା, କାନାଡା, ଜର୍ମାନୀ ଭଳି ଦେଶରେ ଗଚ୍ଛିତ ଥିବା ସର୍ବାଧିକ ୟୁରାନିୟମ ଏହି ଦେଶସବୁ ଇତି ମଧ୍ୟରେ ଯୋଗାଇଦେଇ ସାରିଲେଣି । ପରମାଣୁ ବୋମା ଭିତରେ ଗୋଟିଏ ୟୁରାନିୟମ ପରମାଣୁ ବା ପ୍ଲୁଟୋନିୟମ ପରମାଣୁ ଭାଙ୍ଗିବା ଦ୍ୱାରା ୨୦୦ ନିୟୁତ ଇଲେକ୍‌ଟ୍ରୋନ୍ ଭୋଲ୍‌ଟ ଶକ୍ତି ଉତ୍ପନ୍ନ ହେଉଥିବାରୁ ଏହି ରକେଟରେ ସ୍ଥାପିତ ଲକ୍ଷ ଲକ୍ଷ ଟନ ୟୁରାନିୟମ ଯେତେବେଳେ ମହାକାଶରେ ବିସ୍ଫୋରିତ ହେବ ସେତେବେଳେ ଅବସ୍ଥା କଣ ହେବ ତାହାର କାଳ୍ପନିକ ଚିତ୍ର ବିଶ୍ଳେଷଣ କରୁଥିଲେ ଡେଭିଡ୍ । ବହୁଦିନ ଧରି ସେ ଅନିଦ୍ରା । ମଣିଷ ଶରୀର ତ । କେତେ ଆଉ ସହ୍ୟ କରିପାରିବ । ସ୍ନାୟୁମଣ୍ଡଳ ଯେତେବେଳେ ଅହରହ କାମକରି ଦୁର୍ବଳ ହୋଇପଡିଲେ, ସେମାନେ ସବୁକିଛି ମାନିବାକୁ ସତେଯେପରି ଅପ୍ରସ୍ତୁତ । ଡେଭିଡ୍ ତାଙ୍କ ଅଜାଣତରେ ଘୁମାଇ ପଡିଥିଲେ ଚେୟାର ଉପରେ ।

କ୍ରିଂ, କ୍ରିଂ, - ଟେଲିଫୋନର ଚିତ୍କାରରେ ସେ ହଠାତ୍ ସତେଜ ହୋଇଉଠିଲେ । କେଉଁଠାରୁ ଏହି ଟେଲିଫୋନ । ତାଙ୍କ ନିକଟକୁ ପ୍ରତ୍ୟେକ ଦିନ ଶହଶହ ଟେଲିଫୋନ ଆସୁଥିଲେ ମଧ୍ୟ ନିହାତି ଜରୁରୀ ନ ହେଲେ ସେ ତାହାକୁ ଗ୍ରହଣ କରିବାକୁ ରାଜି ନୁହଁନ୍ତି ବୋଲି ପୂର୍ବରୁ କଡା ନିର୍ଦ୍ଦେଶ ଦେଇସାରିଛନ୍ତି । ତେବେ କଣ କିଛି ଗୋଟାଏ ଅଘଟଣ ଘଟିଲା, ନଚେତ ଅପରେଟର ତ ଆଦୌ ତାଙ୍କୁ କଲ୍ ଦେବାକଥା ନୁହେଁ । ହ୍ୟାଲୋ ! ଡେଭିଡ୍‌ଙ୍କ କଣ୍ଠସ୍ୱର ଶୁଭିଲା । ଅପରପକ୍ଷରୁ ଏକ ଆତଙ୍କିତ କଣ୍ଠ ଶୁଣି ଡେଭିଡ୍ ଚମକି ପଡିଲେ । ଅପର ପକ୍ଷରୁ କହୁଥିଲେ ବୈଜ୍ଞାନିକ

ମାଇକେଲ ସ୍କଟ । ସେ ଥିଲେ ଧୂମକେତୁର ଆଗମନ ସହ ପୃଥିବୀପୃଷ୍ଠରେ ସୃଷ୍ଟି ହେଉଥିବା ବିଭୀଷିକା କବଳରୁ ଲୋକମାନଙ୍କୁ ରକ୍ଷାକରିବା ଦାୟିତ୍ୱରେ । ସାର୍ ! ବଡ ଅସୁବିଧା ଅବସ୍ଥା ସୃଷ୍ଟି ହେଲାଣି । ଧୂମକେତୁ ତ ଖୁବ୍ ନିକଟରେ ବୋଧହୁଏ ଆଉ ମାସେରୁ କମ ସମୟ ପୃଥିବୀ ସହ ସଂଘର୍ଷ ପାଇଁ । ଇତିମଧ୍ୟରେ ପୃଥିବୀର ଅନେକ ଅଞ୍ଚଳରେ ତାପମାତ୍ରା ୫୦ ଡିଗ୍ରୀରୁ ଅଧିକ ହେଲାଣି, ଆଫ୍ରିକା, ଏସିଆ ଭଳି ଅନେକ ଦେଶରେ ଅତ୍ୟଧିକ ଉତ୍ତାପ ବୃଦ୍ଧିଯୋଗୁ ପ୍ରତିଦିନ ଯେପରି ଶହଶହ ଲୋକ ମୃତ୍ୟୁବରଣ କରିବା ଆରମ୍ଭ କଲେଣି । ଅବସ୍ଥା ଯେପରି ହେଲାଣି ଆଉ କିଛି ଦିନ ଭିତରେ ତାପମାତ୍ରା ଆଉ ଅଧିକ ହେଲେ କେତେଲୋକ ଯେ ମୃତ୍ୟୁବରଣ କରିବେ ତାହା କଳ୍ପନା କରିହେଉ ନାହିଁ । ଏହି ସମସ୍ୟାରୁ ଲୋକଙ୍କୁ କିପରି ରକ୍ଷାକରାଯାଇ ପାରିବ । ଡେଭିଡ୍ କହୁଥିଲେ ତୁମେ ସବୁ ଦେଶର ସରକାରଙ୍କୁ ତତ୍‌କ୍ଷଣାତ ନିର୍ଦ୍ଦେଶ ଦିଅ । ସେମାନେ ସେନାବାହିନୀ ସହାୟତାରେ ଦେଶରେ ଥିବା ସବୁ ବଡ଼ବଡ଼ ଗୋଦାମ ଘରକୁ ଶୀତତାପ ନିୟନ୍ତ୍ରଣ କରାଇ ସେହି ସ୍ଥାନକୁ ଲୋକମାନଙ୍କୁ ସ୍ଥାନାନ୍ତରୀତ କରାନ୍ତୁ । ସେଠାରେ ଲୋକମାନଙ୍କୁ ସାମାନ୍ୟ ଖାଦ୍ୟ, ପାନୀୟ ଦେବାର ବ୍ୟବସ୍ଥା କରାଯାଉ । ଆଉ ତ ୧୫ ଦିନସମୟ । ଏହି ୧୫ ଦିନ ପରେ ପରମାଣୁବାହୀ ରକେଟର ଧୂମକେତୁ ସହ ସଂଘର୍ଷ । ଏହାପରେ ଯଦି ଆମେ ସଫଳ ହେଲୁ ତେବେ ଆଉ ଚିନ୍ତାର କାରଣ ନାହିଁ ମାତ୍ର ଯଦି..... ଡେଭିଡ୍‌ଙ୍କ କଣ୍ଠସ୍ୱର ବନ୍ଦ ହେଲା, ସେ ଟେଲିଫୋନ ରଖିଲେ ।

ପନ୍ଦର ଦିନ ପୃଥିବୀବାସୀଙ୍କୁ ଉତ୍ତପ୍ତଅବସ୍ଥାରୁ ରକ୍ଷାକରିବା ପାଇଁ ଯୁଦ୍ଧକାଳୀନ ଭିତ୍ତିରେ ବିଭିନ୍ନ ଦେଶରେ କାର୍ଯ୍ୟକ୍ରମ ଆରମ୍ଭ ହେଲା । ଲୋକମାନେ ଘରୁ ପଦାକୁ ନ ବାହାରି, ଯଥେଷ୍ଟ ପାନୀୟ ଗ୍ରହଣ କରି ସର୍ବଦା ଘର ଭିତରେ ରହିବାକୁ ସମସ୍ତଙ୍କୁ ନିର୍ଦ୍ଦେଶ ଦିଆଗଲା । ଦିନ ଆଉ ରାତିର ତାପମାତ୍ରାରେ ବିଶେଷ ଫରକ ଅନୁଭୂତ ହେଉ ନ ଥିଲା । ଦିନରେ ସୂର୍ଯ୍ୟାଲୋକ ଓ ରାତ୍ରିରେ ଅନ୍ଧକାରକୁ ଦୂରେଇଦେଇ ଆକାଶକୁ ଏକ ସ୍ୱତନ୍ତ୍ର ଜ୍ୱଳନ୍ତ ଆଲୋକରେ ଉଦଭାସିତ କରି ଦେଖାଯାଉଥିଲା ପ୍ରଳୟ ସୃଷ୍ଟିକାରୀ ଧୂମକେତୁର ଭୟଙ୍କର ରୂପ । କ୍ରମେ ଏହା ଆକାଶର ଅଧେ ଅଞ୍ଚଳକୁ ମାଡିଗଲା ପରି ଅବସ୍ଥାରେ ପହଁଞ୍ଚି ଥିଲା । ଜଣାପଡୁଥିଲା ଖୁବ ଶୀଘ୍ର ବୋଧହୁଏ ଏହା ସମଗ୍ର ଆକାଶକୁ ଗ୍ରାସ କରିଯିବ ଓ ପୃଥିବୀ ଏହାର ବୃହତ୍ତ ଗର୍ଭରେ ହିଁ ଲୁଚିଯିବ ?



# ଉତ୍ତଳ ସାମୁଦ୍ରିକ ଝଡ଼ ଓ ଜୁଆରିଆ ସମୁଦ୍ର

ଗୋଟିଏ ପଟେ ପରମାଣୁ ବୋମାବାହୀ ପ୍ରକାଣ୍ଡ ରକେଟ ନିର୍ମାଣ ଚାଲିଥିଲାବେଳେ ଓ ଉତ୍ତାପ ବଢ଼ିବଢ଼ି ଚାଲିଥିଲାବେଳେ ଅନ୍ୟପଟେ ସମୁଦ୍ରରେ ସୃଷ୍ଟି ହେଲା ଏକ ଅସ୍ୱାଭାବିକ ଅବସ୍ଥା । କେତେକ ଅଞ୍ଚଳରେ ସମୁଦ୍ରର ଉତ୍ତଳ ଜଳରାଶୀ ସ୍ଥଳଭାଗ ଉପରକୁ ମାଡି ଆସୁଥିଲା ଓ ଅନେକ ଉପକୂଳବର୍ତ୍ତୀ ଜନପଦର ତଥା ଶ୍ୟାମଳ ଶସ୍ୟକ୍ଷେତ୍ର ଏହାର ଗର୍ଭରେ ଲୀନ ହେଉଥିଲା । ଆତଙ୍କିତ ଜନତା ସମୁଦ୍ର ବକ୍ଷରେ ସୃଷ୍ଟି ହେଉଥିବା ବୃହତ୍ତମ ଢେଉ ଦେଖି ପ୍ରମାଦ ଗଣୁଥିଲେ । ସବୁବେଳେ ଏହାର ବକ୍ଷ ଅଶାନ୍ତ ରହୁଥିଲା ଓ ସମୁଦ୍ରକୂଳରୁ ବୋହୁଥିଲା ଗରମ ପବନ ।

ସମୁଦ୍ରପଥରେ ଯାତାୟତ କେବେଠାରୁ ବନ୍ଦ କରିଦିଆଯାଇଛି ଏପରି ଅବସ୍ଥା ପାଇଁ, ଏବେ ଯାତାୟତର ପଥ କେବଳ ବିମାନସେବା । ପ୍ରତ୍ୟେକ ଦେଶର ଅନେକ ପଣ୍ୟବାହୀ ବିମାନକୁ 'ପୃଥିବୀ ରକ୍ଷା କାର୍ଯ୍ୟକ୍ରମ' ପାଇଁ ନିୟୋଜିତ କରାଯାଇଥିବାରୁ ଯାତ୍ରୀ ପରିବହନ ପାଇଁ ଅଳ୍ପ କେତୋଟି ଯାତ୍ରୀବାହୀ ବିମାନ କେବଳ ଚଳାଚଳ କରୁଛି । ଆଫ୍ରିକା, ଏସିଆଭଳି ଅନେକ ଗ୍ରୀଷ୍ମ ପ୍ରଧାନ ଅଞ୍ଚଳରୁ ଲୋକଙ୍କୁ ଉଦ୍ଧାରକରି ଅପେକ୍ଷାକୃତ ଥଣ୍ଡା ଅଞ୍ଚଳକୁ ପଠାଇବା କାର୍ଯ୍ୟରେ ମଧ୍ୟ ଦିନରାତ୍ରି ଲାଗିଛନ୍ତି ଅନେକ ବିମାନ । ସାରା ବିଶ୍ୱର ଅନେକ ଶୀତପ୍ରଧାନ ଅଞ୍ଚଳରେ ଖୋଲାଯାଇଛି ଶହଶହ ଶିବିର । ତେବେ କେତେଲୋକଙ୍କୁ ଅବା ଏଭଳି ଶିବିର ଗୁଡ଼ିକ ସୁରକ୍ଷା ଦେଇପାରିବ ? ପ୍ରତ୍ୟେକଦିନ ସେଇଥିପାଇଁ ଜାତୀୟ ସରକାରଙ୍କ ଚେଷ୍ଟା ସତ୍ତ୍ୱେ ଅନେକ ଲୋକ ଅସହାୟ ଭାବେ ମୃତ୍ୟୁବରଣ କରୁଛନ୍ତି ।

ଅନେକ ସାମୁଦ୍ରିକ ଜୀବ ମଧ୍ୟ ଏହି ବିପତ୍ତିରୁ ରକ୍ଷା ପାଇ ନାହାଁନ୍ତି । ସାଗର ବେଳାଭୂମିରେ ଏବେ ଭାସୁଛି ଅଗଣିତ ସମୁଦ୍ର ଜୀବଙ୍କ ମୃତ ଦେହ । ସେସବୁ

ଦେଖିବାକୁ କାହାକୁ ବା ବେଳଅଛି । ସମୁଦ୍ରକୂଳ କ୍ରମେ ଜନଶୂନ୍ୟ ହୋଇଯାଉଛି । ଅନେକ ସାଧାରଣ ଲୋକେ ଭାବୁଛନ୍ତି ସତେ ଯେପରି ସମୁଦ୍ରଆଡୁ ହିଁ ମୁଖ୍ୟ ବିପତ୍ତି ପୃଥିବୀ ଉପରକୁ ମାଡି ଆସୁଛି ।

ସମସ୍ତ ଦାୟିତ୍ୱ ନେବା ଆଉ ସମ୍ଭବ ନୁହେଁ । ଅନ୍ତତଃ ପ୍ରତ୍ୟେକ ଦେଶର ସରକାର ସେମାନଙ୍କ ଦେଶବାସୀଙ୍କ ସୁରକ୍ଷାପାଇଁ କାର୍ଯ୍ୟକ୍ରମ ଗ୍ରହଣ କରନ୍ତୁ - ଏହା ଥିଲା ପୃଥିବୀ ରକ୍ଷା ଦାୟିତ୍ୱରେ ଥିବା ବୈଜ୍ଞାନିକ ମାନଙ୍କର ସବୁ ଦେଶର ନେତୃବୃନ୍ଦଙ୍କୁ ନିବେଦନ ।

ଡେଭିଡ୍‌ଙ୍କ ନେତୃତ୍ୱରେ ପୃଥିବୀର ସର୍ବବୃହତ୍ତ ତଥା ସର୍ବଶକ୍ତିଶାଳୀ ପରମାଣୁ ଶକ୍ତିପୂର୍ଣ୍ଣ ରକେଟ ନିର୍ମାଣ କାର୍ଯ୍ୟ ଦିନରାତି ଚାଲିଥିଲା । ଏହାର ନିର୍ମାଣ ସ୍ତମ୍ଭର ଉଚ୍ଚତା ଥିଲା ହଜାର ହଜାର ଫୁଟ । ଏଭଳି ବୃହତ୍ତ ରକେଟ ପୃଥିବୀର ବୈଜ୍ଞାନିକମାନେ ଏତେ ଶୀଘ୍ର ତିଆରିକରି ଏହାକୁ ଯେ ଠିକ ଭାବେ ଉତକ୍ଷେପିତ କରିପାରିବେ ଏଥିପାଇଁ ସବୁବେଳେ ସମସ୍ତଙ୍କ ମନରେ ସନ୍ଦେହ ରହିଆସିଥିଲା । ସବୁଠାରୁ ବିପଦପୂର୍ଣ୍ଣ କାର୍ଯ୍ୟଥିଲା ଯଦି କୌଣସି କାରଣ ବସତଃ ଏଥିରେ ସାମାନ୍ୟ ତ୍ରୁଟିରହେ ତେବେ ଏହା ମହାକାଶକୁ ଯିବା ପରିବର୍ତ୍ତେ ପୃଥିବୀ ନିକଟରେ ବିସ୍ଫୋରିତ ହୋଇ ଆଖି ପିଛୁଳାକେ ସମଗ୍ର ୟୁରୋପ, ଏସିଆର ଚିହ୍ନବହ୍ନ ନ ରହିବା ସହ ପୃଥିବୀର ଅନ୍ୟାନ୍ୟ ଅଞ୍ଚଳରୁ ଶତକଡା ୬୦/୭୦ ଭାଗ ଜୀବନ୍ତ ପ୍ରାଣୀ ଓ ଉଦ୍ଭିଦରାଜି ମୃତ୍ୟୁବରଣ କରିବେ ।

ସାରା ବିଶ୍ୱର ବିଭିନ୍ନ ଅଞ୍ଚଳରୁ ଅଣାଯାଇଥିବା ପରମାଣୁ ବୋମା ନିର୍ମାଣର ମୁଖ୍ୟ ଉପାଦାନ ୟୁରାନିୟମ - ୨୩୫କୁ ବିଶୁଦ୍ଧ କରାଯିବା କାର୍ଯ୍ୟ ଏକ ସ୍ୱତନ୍ତ୍ର କାରଖାନାରେ ଚାଲିଥିଲା । କାରଣ ୟୁରାନିୟମ ୨୩୫ ହିଁ ସବୁଠାରୁ ଶକ୍ତିଶାଳୀ । ୟୁରାନିୟମ ଧାତୁରେ ମାତ୍ର ଶତକଡା ଶୂନ୍ୟ ଦଶମିକ ୭ଭାଗ ୟୁରାନିୟମ ୨୩୫ ଥିବାରୁ ଏହାର ବିଶୁଦ୍ଧିକରଣ ଉପରେ ବିଶେଷ ଗୁରୁତ୍ୱ ଦିଆଯାଇଥିଲା । କାରଣ କମ ପରିମାଣର କିନ୍ତୁ ଅଧିକ ଶକ୍ତି ଯୋଗାଇ ପାରୁଥିବା ପଦାର୍ଥ ଉପରେ ଡେଭିଡ୍ ବେଶୀ ଗୁରୁତ୍ୱ ଦେଉଥିଲେ । ଏହା କରାଗଲେ ରକେଟର ଉଚ୍ଚତା ବେଶୀ ହେବନାହିଁ କିନ୍ତୁ ଛୋଟ ଆକାର ବିଶିଷ୍ଟ ହେଲେ ମଧ୍ୟ ଏହାର ଶକ୍ତି ସବୁଠାରୁ ପ୍ରଚଣ୍ଡ ହୋଇପାରିବ । ୟୁରାନିୟମକୁ ବିଶୁଦ୍ଧକରିବା ୩ଟି ପଦ୍ଧତିରେ ଏଠାରେ ଚାଲିଥିଲା । ବିଶ୍ୱର ବଛାବଛା ପଦାର୍ଥ ବିଜ୍ଞାନୀ ଦିନରାତ୍ରି ଏହି କାମରେ

ଲାଗିଥିଲେ । ଚୂମ୍ବକୀୟ ପ୍ରଣାଳୀ, ଗ୍ୟାସ ଫିଉଜନ ପ୍ରଣାଳୀ ଓ ଗ୍ୟାସ ସେଣ୍ଟ୍ରିଫିଉଜନ ପ୍ରଣାଳୀ ବ୍ୟତୀତ ପରମାଣୁ ବୋମା ନିର୍ମାଣପାଇଁ ଅତ୍ୟାବଶ୍ୟକ ପ୍ଲୁଟୋନିୟମ ପାଇଲ୍ ପ୍ରସ୍ତୁତି କାର୍ଯ୍ୟ ଦୂରରେ ଥିବା ଅନେକ ରିଆକ୍ଟର ଦ୍ୱାରା ପ୍ରସ୍ତୁତ ହେଉଥିଲା । କେତେ ପରିମାଣର ୟୁରାନିୟମ - ୨୩୫ ବା ପ୍ଲୁଟୋନିୟମ ଏହି ରକେଟରେ ବ୍ୟବହାର କରାଯିବ ତାହା ନିର୍ଦ୍ଧାରଣ କରିବା ହେଉଛି ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ତଥା କଠିନ କାର୍ଯ୍ୟ । ଏହି କାର୍ଯ୍ୟରେ ସବୁଠାରୁ ବିଜ୍ଞ ଓ ଅଭିଜ୍ଞ ବୈଜ୍ଞାନିକଙ୍କୁ ଲଗାଯାଇଥିଲା । ଡେଭିଡ୍ ନିଜେ ଏସବୁ କାର୍ଯ୍ୟ ତଦାରଖ କରୁଥିଲେ । ସେ ବୈଜ୍ଞାନିକମାନଙ୍କୁ ସତର୍କ କରାଇଦେଇ କହିଚାଲୁଥିଲେ "ପ୍ରତ୍ୟେକ ମିନିଟ ଯେଭଳି ଆମ ପାଇଁ ଅମୂଲ୍ୟ ପ୍ରତ୍ୟେକ ପଦାର୍ଥର ସଠିକ ଗବେଷଣା ହିଁ ତାଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ । " ଆମେ ଗୋଟିଏ ସେକେଣ୍ଡ ଯେଭଳି ନଷ୍ଟ କରିବା ଉଚିତ ନୁହେଁ ଠିକ ସେହିଭଳି କିଛି ଭୁଲ ଛାଡିଦେଇ ସଂପୂର୍ଣ୍ଣ ପୃଥିବୀକୁ ଧ୍ୱଂସହେବାକୁ ଛାଡିଦେବା ମଧ୍ୟ ଉଚିତ ନୁହେଁ । ତେଣୁ ତନ୍ନ ତନ୍ନକରି ପରୀକ୍ଷା କାର୍ଯ୍ୟକ୍ରମ ଚାଲିଥିଲା ଅତ୍ୟନ୍ତ ସୁଚାରୁରୂପେ । କେତେ ପରିମାଣର ୟୁରାନିୟମ - ୨୩୫ ଏହି ବୋମାରେ ରଖାଯିବ ତାହା ମଧ୍ୟ ନିର୍ଦ୍ଧାରିତ ହୋଇଥିଲା । କାରଣ ଏଥିରେ ଥିବା ମୌଳିକ ବସ୍ତୁ ବିସ୍ଫୋରଣବେଳେ ଭାଙ୍ଗି ପ୍ରଚଣ୍ଡ ଶକ୍ତି ସୃଷ୍ଟି କରୁଥିଲେ ମଧ୍ୟ ଧୂମକେତୁ ଉପରେ ଏହି ଶକ୍ତିର ପ୍ରଭାବ ଯଦି ଠିକ ଭାବେ ପ୍ରତିଫଳିତ ନ ହେଲା ତେବେ ଧୂମକେତୁ ତାର ଗତିପଥ ବଦଳାଇବାର ପ୍ରଶ୍ନ ଉଠୁନାହିଁ । ହିରୋସୀମାରେ ବିସ୍ଫୋରିତ ହୋଇଥିବା ପରମାଣୁ ବୋମାଠାରୁ ଅନ୍ତତଃ ଏକ ହଜାର ଗୁଣ ଅଧିକ ଶକ୍ତିଶାଳୀ ପରମାଣୁ ବୋମା ନିର୍ମାଣକରି ଧୂମକେତୁ ନିକଟକୁ ପ୍ରେରଣ କରିବା ଡେଭିଡ୍‌ଙ୍କ ଲକ୍ଷ ଥିଲା । ପୃଥିବୀ ପୃଷ୍ଠର ସମସ୍ତ ଜ୍ଞାନକୌଶଳ ଅନୁସାରେ ଏହି ବୋମାଠାରୁ ୫୦୦/୬୦୦ ଗୁଣ ଅଧିକ ଶକ୍ତିଶାଳୀ ବୋମା ନିର୍ମାଣ କରବା ବିଷୟରେ ମଣିଷ ଚିନ୍ତା କରିଥିବା ବେଳେ କାର୍ଯ୍ୟରେ କେବେ ଏହା କରିବାକୁ ଆଗଭର ହୋଇ ନାହିଁ । କିନ୍ତୁ ବିଧିର ବିଚିତ୍ର ବିଡମ୍ବନା ଏବେ ଅତ୍ୟନ୍ତ ମାରାତ୍ମକ ଏହାଠାରୁ ଏକ ହଜାର ଗୁଣ ଅଧିକ ଶକ୍ତିଶାଳୀ ବୋମା ନିର୍ମାଣ କାର୍ଯ୍ୟ ମଣିଷ ପ୍ରଥମେ ଓ ବୋଧହୁଏ ଶେଷଥର ପାଇଁ ଆରମ୍ଭ କରିଛି । ଭବିଷ୍ୟତରେ ବୋଧହୁଏ ଏତେବଡ ବୋମା ନିର୍ମାଣ ଆଉ କେବେ ହେବାର ଆଶା ନାହିଁ । ଏହି ବୋମାସହ ଅଧିକ ଶକ୍ତିଶାଳୀ ଉଦଯାନ ବୋମା ସଂଯୋଗ କରିବାକୁ ମଧ୍ୟ ନିଷ୍ପତ୍ତି ନେଇଥିଲେ ଡେଭିଡ୍ । ଉଦଯାନ ବୋମାରେ ପରମାଣୁ ବୋମାଠାରୁ ପ୍ରାୟ ୭ଗୁଣ ଅଧିକ ଶକ୍ତି ଉତ୍ପନ୍ନ ହୋଇଥାଏ ।



# ପରମାଣୁ ରକେଟ

ଇତିମଧ୍ୟରେ ପରମାଣୁ ବୋମାକୁ ଧୂମକେତୁ ଯାଏ ବୋହିନେବା ପାଇଁ ପରମାଣୁ ଶକ୍ତିଯୁକ୍ତ ରକେଟ ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଥିଲା । ଆକାରରେ ଏହା ବିଶେଷ ବଡ ନହେଲେ ମଧ୍ୟ ଏହାର ବିଭିନ୍ନ ପର୍ଯ୍ୟାୟରେ ରହିଥିଲା ପରମାଣୁ ଶକ୍ତିର ଅପୂରନ୍ତ ଭଣ୍ଡାର ।



ଏହାର ନିର୍ମାଣ କାର୍ଯ୍ୟ ଯୋରସୋରରେ ଚାଲିଥିଲା । ଅତ୍ୟନ୍ତ ସତର୍କତାର ସହ ବିଭିନ୍ନ ପର୍ଯ୍ୟାୟରେ ପରମାଣୁ ଇନ୍ଧନକୁ ସାଇତା ରଖାଯାଇ ଏହାର ଉଚ୍ଚତା ବୃଦ୍ଧି କରାଯାଉଥିଲା । ଏହି ରକେଟ ନିର୍ମାଣର ସଂପୂର୍ଣ୍ଣ ଦାୟିତ୍ୱରେ ରହିଥିଲେ ରବର୍ଟ । ବହୁ ମହଲା ବିଶିଷ୍ଟ କୃତ୍ରିମ ଘର ନିର୍ମାଣ କରାଯାଇ ଲିଫ୍ଟ ସାହାଯ୍ୟରେ ଏଥିରେ ପରମାଣୁ ଇନ୍ଧନ ଭର୍ତ୍ତି କରାଯିବା କାର୍ଯ୍ୟ ଚାଲିଥିଲା । ଠିକ୍ ଏହାର ନିମ୍ନଭାଗରେ ରହିଥିଲା ଏକ କୃତ୍ରିମ ହ୍ରଦ । ଏହି ହ୍ରଦ ଇତି ମଧ୍ୟରେ ଜଳପୂର୍ଣ୍ଣ ହୋଇସାରିଲାଣି । ରକେଟର ସଂପୂର୍ଣ୍ଣ ନିର୍ମାଣ କାର୍ଯ୍ୟ ଆଗେଇ ଚାଲିଛି ଯୁଦ୍ଧକାଳୀନ ଭିତ୍ତିରେ ।



# ଅସମ୍ଭାଳ ଅବସ୍ଥା

ସାରା ପୃଥିବୀ ଉପରେ ବୋହୁଥିଲା ଝାଞ୍ଜି ପବନ । ଡହଳ ବିକଳ ହୋଇଯାଉଥିଲେ ଜୀବଜନ୍ତୁ ଓ ମାନବ ସମାଜ । ସମସ୍ତେ ଆକୁଳଭାବେ ରାତ୍ରିକୁ ଅପେକ୍ଷା କରୁଥିଲେ । ରାତ୍ରିରେ ମଧ୍ୟ ରକ୍ଷା ନାହିଁ । ଉତ୍ତାପ କ୍ରମେ ବଢ଼ିବଢ଼ି ଯାଉଥିଲା । ପାହାନ୍ତିଆ ପହରୁ ସୂର୍ଯ୍ୟରଶ୍ମୀ ସହ ମାଡିଆସୁଥିଲା ଗ୍ରୀଷ୍ମ ପ୍ରବାହ । ସକାଳ ପହରୁ ଗାଧୁଆ ପାଧୁଆସାରି ଘର ଭିତରେ ସମସ୍ତେ ଲୁଚି ରହୁଥିଲେ । ସହର ବଜାର ସବୁ ବନ୍ଦ, ଚାରିଆଡେ ଶ୍ମଶାନର ନିରବତା । କୋଳାହଳମୟ ସୁନ୍ଦର ପୃଥିବୀ ଏଇ କେତେଦିନ ଭିତରେ ସତେ ଯେପରି ରୂପାନ୍ତରୀତ ହୋଇଥିଲା ଏକ ନିର୍ଜୀବ ପିଣ୍ଡରେ - ଏହା ହିଁ ମନେ ହେଉଥିଲା । ସୂର୍ଯ୍ୟୋଦୟପରେ ଲୋକେ ପଦାକୁ ବାହାରୁଥିଲେ । ବଜାର ସଉଦା କରୁଥିଲେ, ନିତ୍ୟକର୍ମ ସାରୁଥିଲେ । ଅନେକ ଉଦ୍ଭିଦରାଜୀ ଜଳିପୋଡି ମରିଗଲେଣି । ପ୍ରତିଦିନ ରାସ୍ତାରେ ମରିପଡୁଛନ୍ତି ଅନେକ ପଶୁପକ୍ଷୀ । ଯେତେବେଳେ ମଣିଷର ସୁରକ୍ଷା ବିପନ୍ନ ସେତେବେଳେ ଅନ୍ୟମାନଙ୍କ କଥା ପଚାରେ କିଏ ? ରାତ୍ରିର ଆଗମନ ସହ ସାରା ଆକାଶରେ ଆଲୋକର ବନ୍ୟା ଖେଳାଇ ଉଦଭାସିତ ହେଉଛି ସେହି ବୃହତ୍ତ ଧୂମକେତୁ । ଦିନକୁ ଦିନ ଏହାର ଆକାର ଏତେ ବୃଦ୍ଧି ପାଉଛି ଯାହାକୁ ଦେଖି ଲୋକେ ଆତଙ୍କିତ ହୋଇପଡିଲେଣି ।

ସାହାରା ମରୁଭୂମିର ଦେଶ ଆଫ୍ରିକା, ଏସିଆ ଓ ୟୁରୋପର କେତେକ ଅଞ୍ଚଳରେ ଅବସ୍ଥା ଅସମ୍ଭାଳ ହୋଇପଡିଲାଣି । ପ୍ରତ୍ୟେକଦିନ ଅନେକ ଗରିବ ଦେଶର ହଜାର ହଜାର ଲୋକ ମୃତ୍ୟୁବରଣ କରିବାର ଖବର ମିଳିବାରେ ଲାଗିଛି । ଏମାନଙ୍କୁ ବଞ୍ଚାଇ ରଖିବାର ସତେ ଯେପରି କୌଣସି ଉପାୟ ନାହିଁ । ଶୀତ ଋତୁରେ ମଧ୍ୟ ଗ୍ରୀଷ୍ମ ଋତୁର ଆଗମନ ହେଲାଣି । ବହୁ ସ୍ଥାନରେ ପାହାଡ ପର୍ବତରେ ଗଦା ହୋଇଥିବା ମୋଟା ବରଫ ତରଳିବା ଦ୍ୱାରା ଅନେକ ନଦୀରେ ଏବେ ଅଦିନ ବନ୍ୟା ଆସିଛି । ପୃଥିବୀର ବଡବଡ ନଦୀ ମିଶୋରୀ-ମିଶିଶିପ, ଆମାଜନ, ବ୍ରହ୍ମପୁତ୍ର, ନୀଳ, ଗଙ୍ଗା, ଯମୁନାରେ ଏବେ ଭରପୁର ଜଳଧାରା । ଅନେକ ଅଞ୍ଚଳରେ ସୃଷ୍ଟି ହୋଇଥିବା

ବନ୍ୟାରେ ଆକ୍ରାନ୍ତ ହେଲେଣି ଅନେକ । ଉପରେ ଚିକ୍‌ଚିକ୍ ଖରା, ପ୍ରଚଣ୍ଡ ଉତ୍ତାପ, ତଳେ ଅନେକ ଅଞ୍ଚଳରେ ଜଳର ପ୍ଳାବନ । ଅନେକ ଲୋକ ଏ ପ୍ରକାର ବନ୍ଧୁର ପ୍ରାକୃତିକ ଅବସ୍ଥା ଭିତରେ କେବଳ ଆଉଟପାଉଟ ହେଉଛନ୍ତି । କାହାକଥା ଶୁଣିବାକୁ କାହାର ବେଳ ନାହିଁ । ନିଜ ଜୀବନକୁ ବିପନ୍ନକରି ଆକ୍ରାନ୍ତ ଲୋକଙ୍କୁ ବଞ୍ଚାଇବାକୁ କିଏ ବା ଆଗଭର ହେବ ! ଦୁର୍ଭିକ୍ଷ ପ୍ରପୀଡିତ ଆଫ୍ରିକାର ଅବସ୍ଥା ସବୁଠାରୁ ଅଧିକ ଉଦବେଗଜନକ ହୋଇଛି । ଏକ ସପ୍ତାହ ଭିତରେ ଏଠାରେ ଲକ୍ଷଲକ୍ଷ ଲୋକଙ୍କ ମୃତ୍ୟୁ ଘଟିଲାଣି । ପ୍ରଚଣ୍ଡ ଗ୍ରୀଷ୍ମ ପ୍ରବାହ ଯୋଗୁ ଗୋଟିଏ ପଟେ ପ୍ରବଳ ବନ୍ୟା ସୃଷ୍ଟିହୋଇ ଅଧିକାଂଶ ନଦୀ କୂଳବର୍ତ୍ତୀ ଅଞ୍ଚଳରେ ବିଭୀଷିକା ସୃଷ୍ଟି କରିଥିବାବେଳେ ଅନ୍ୟ ପକ୍ଷରେ ନଦୀନାଳ ନଥିବା କେତେକ ଅଞ୍ଚଳରେ କୂଅ ପୋଖରୀ ଶୁଖିଯାଇ ଲୋକେ ପିଇବା ପାଣିଟିକେ ମଧ୍ୟ ପାଉ ନାହାଁନ୍ତି । କେତେକ ସ୍ଥାନରେ କଲେରା, ପେଟରୋଗ ମହାମାରୀ ରୂପ ନେଲାଣି ।

ସମଗ୍ର ବିଶ୍ୱ ଏବେ ଗୋଟିଏ ଅଞ୍ଚଳ । ପ୍ରତ୍ୟେକ ଦିନ ଗଣ ମାଧ୍ୟମ ଦ୍ୱାରା ଲୋକଙ୍କୁ ସତର୍କ ରହିବାକୁ ବାରମ୍ବାର ଉପଦେଶ ଦିଆଯାଉଛି । ଧୂମକେତୁ ପୃଥିବୀସହ ସଂଘର୍ଷର ଦୁଇମାସ ପୂର୍ବରୁ ପରମାଣୁ ବୋମାବାହୀ ରକେଟକୁ ଏହା ନିକଟକୁ ପ୍ରେରଣ କରାଯିବା ପାଇଁ ନିଷ୍ପତ୍ତି ଗ୍ରହଣ କରାଯାଇଛି । ନିର୍ଦ୍ଦିଷ୍ଟ ସମୟରେ ଏହି କାର୍ଯ୍ୟକ୍ରମ ହିଁ କରିବାକୁ ହେବ । ଏହା କରାନଗଲେ ପୃଥିବୀର ଉତ୍ତାପ କ୍ରମେ ଏତେ ଅଧିକ ହୋଇଯିବ ଯଦ୍ୱାରା ମଣିଷ ଓ ଜୀବଜନ୍ତୁ ଏହା ପୃଷ୍ଠରେ ଆଉ ବଞ୍ଚିରହିବା ସମ୍ଭବ ହେବ ନାହିଁ । ମହାକାଶକୁ ବୋମାବାହୀ ରକେଟ ପ୍ରେରଣ କରିବାର ଦିନ କ୍ରମେ ପାଖେଇ ଆସୁଛି । ହାତରେ ଆଉ ମାତ୍ର ୧୦ ଦିନ । ଆମେରିକା ରାଷ୍ଟ୍ରପତି ତଥା ସବୁଦେଶର ନେତୃବୃନ୍ଦ କୌଣସିମତେ ଆଉ ୧୦ ଦିନ ସତର୍କତାର ସହ ଚଳିଯିବାକୁ ବାରମ୍ବାର ଅନୁରୋଧ କରୁଛନ୍ତି ରେଡିଓ, ଟେଲିଭିଜନ ମାଧ୍ୟମରେ ଜନସାଧାରଣଙ୍କୁ । ଏହାଛଡା ଆଉ ଯେ ଅନ୍ୟ ଉପାୟ ନାହିଁ । ଲୋକଙ୍କ ମନରେ ଧର୍ଯ୍ୟ ଓ ସାହସ ସୃଷ୍ଟି କରାଯାଉଛି । ସମସ୍ତଙ୍କ ମନରେ ଏକ ଧାରଣା ସୃଷ୍ଟି କରାଯାଇଛି ଯେ ଏହି ପରମାଣୁ ରକେଟର ଯାତ୍ରାପରେ ଧୂମକେତୁ କବଳରୁ ପୃଥିବୀକୁ ରକ୍ଷା କରାଯିବ । ପୃଥିବୀ ସହ ଏହାର ସଂଘର୍ଷ ବିଷୟରେ କୌଣସି ତଥ୍ୟ ସାଧାରଣ ଜନତାଙ୍କୁ ଜଣାଇ ଦିଆଯାଇ ନଥିଲେ ମଧ୍ୟ ଅନେକ ଲୋକ ଏହା ଜାଣି ସାରିଲେଣି । ସବୁଆଡେ ଏକ ଭୟଙ୍କର ଅବସ୍ଥା । ଶେଷ ଆଶା ଭରସା ବୈଜ୍ଞାନିକମାନଙ୍କ ଉପରେ ।

ପ୍ରତ୍ୟେକ ଦିନ ସାଗରର ଅତଳ ଗର୍ଭରେ ଅନେକ ଦ୍ୱୀପପୁଞ୍ଜ ବୁଡିଯିବାର ଖବର ମିଳୁଛି । ସେଠାରୁ କେତେଲୋକଙ୍କୁ ଉଦ୍ଧାର କରାଗଲା ଓ କେତେଲୋକ ସମୁଦ୍ରର ଜଳରାଶୀରେ ସଲୀଳ ସମାଧି ନେଲେ ତାହାର ସଠିକ ବାର୍ତ୍ତା ପହଞ୍ଚୁପାରୁ ନାହିଁ । ହଜାର ହଜାର ଶୀତତାପ ନିୟନ୍ତ୍ରିତ ଆଶ୍ରୟ ସ୍ଥଳକୁ ଦିନ ରାତ୍ରି ଲୋକ୍ ବୁହା ହେଉଛନ୍ତି । ଜୀବନ ବଞ୍ଚାଇବାକୁ ପ୍ରଚଣ୍ଡ ରୌଦ୍ରତାପ ସତ୍ୱେ ଯେଉଁମାନେ ଯାନବାହନରେ ବସି ଏହି ଆଶ୍ରୟସ୍ଥଳ ଅଭିମୁଖେ ଯାତ୍ରା କରୁଛନ୍ତି ସେମାନଙ୍କ ଭିତରୁ ଅନେକ ପ୍ରଚଣ୍ଡ ଉତ୍ତାପରେ ଆଶ୍ରୟ ସ୍ଥଳରେ ପହଁଞ୍ଚିବା ପୂର୍ବରୁ ମୃତ୍ୟୁବରଣ କରୁଛନ୍ତି । ଅନେକ ଶିଶୁ ଓ ବୁଢ଼ାବୁଢ଼ୀ ବିଶେଷଭାବେ ମରୁଥିବାର ଦେଖାଯାଉଛି । ସବୁଆଡେ ଶୋକାକୂଳ ଅବସ୍ଥା । ଦୁଃଖର ସତେଯେପରି ଶେଷ ନାହିଁ । ଆଉ ମାତ୍ର ୫ ଦିନ । ତା'ପରେ ସବୁ ଦୁଃଖର ପରିସମାପ୍ତି ।



# ପରମାଣୁ ରକେଟକୁ ଛଡାଗଲା

ଇତିମଧ୍ୟରେ ରକେଟ ନିର୍ମାଣ କାର୍ଯ୍ୟ ଶେଷ ପର୍ଯ୍ୟାୟରେ ପହଁଞ୍ଚିସାରିଛି । ବରଫାବୃତ୍ତ ସାଇବେରିଆରେ ମଧ୍ୟ ବାୟୁମଣ୍ଡଳର ଉତ୍ତାପ ୪୫ ଡିଗ୍ରୀ ପାଖାପାଖି ହେଲାଣି । ଉତ୍ତର ଗୋଲାର୍ଦ୍ଧର ବରଫଗଦା ଏବେ ତରଳିବା ଆରମ୍ଭ କରିଛି । ସବୁଆଡେ ଜଳର ପ୍ଲାବନ । ସାଗର ମଧ୍ୟରେ ଭାସୁଥିବା ଅନେକ ବରଫ ପାହାଡ ମଧ୍ୟ ତରଳିଗଲାଣି । ପ୍ରକୃତିର ଏହି ପରିବର୍ତ୍ତନକୁ କିନ୍ତୁ ଦେଖିବାପାଇଁ କାହାର ସମୟ ନାହିଁ । ଆଜି ସନ୍ଧ୍ୟା ସୁଦ୍ଧା ଯେପରି ହେଲେ ରକେଟ ନିର୍ମାଣ କାମ ଶେଷ କରିବାକୁ ହେବ । ପ୍ରଚଣ୍ଡ ଉତ୍ତାପରୁ ରକ୍ଷା ପାଇବାପାଇଁ ସମସ୍ତ ବୈଜ୍ଞାନିକଙ୍କ ଦେହରେ ରହିଛି ସ୍ୱତନ୍ତ୍ର ପୋଷାକ । ବୃଦ୍ଧ ବୟସରେ ମଧ୍ୟ ଯୁବକ ପାଲଟି ଡେଭିଡ୍ ଏବେ ନବ ଉନ୍ମାଦନା ଓ ପ୍ରେରଣାରେ ଦିନରାତ୍ରି କାମକରି ଚାଲିଛନ୍ତି । ରକେଟ ଉତ୍‌କ୍ଷେପଣ ଗୋଟିଏ ଦିନ ଡେରୀ ହେବା ଅର୍ଥ ପୃଥିବୀର ପୁଣି କେତେ ଲକ୍ଷ ଲୋକଙ୍କ ମୃତ୍ୟୁ ଖବର ପାଇବା ।

ଡେଭିଡ୍ ଓ ଅନ୍ୟ ବୈଜ୍ଞାନିକମାନଙ୍କୁ ପୃଥିବୀରେ ଘଟୁଥିବା ଦୁଃଖଦ ଘଟଣା ବିଷୟରେ ଜଣାଇ ଦିଆଯାଉ ନଥିଲା । ଏହା ଦ୍ୱାରା ସେମାନଙ୍କ ଏକାଗ୍ରତା ନଷ୍ଟ ହେବାର ସମ୍ଭାବନା ରହିଥିଲା ଓ ପ୍ରାକାରାନ୍ତରେ ସମଗ୍ର ଯୋଜନାଟି ବିଫଳ ମଧ୍ୟ ହେବାର ଆଶା ଥିଲା । ତେଣୁ ପୃଥିବୀର କେଉଁଠି କଣ ହେଉଛି ତାହା ଜାଣିବାର ସୁଯୋଗ ଏମାନଙ୍କୁ ଦିଆଯାଉ ନଥିଲା ।

ରାତ୍ରି ୩ଟା । ରକେଟର ନିର୍ମାଣ କାର୍ଯ୍ୟ ଶେଷ । ଠିକ୍ ୪ଟା ବେଳକୁ ଆରମ୍ଭ ହେବ ବିରାଟ ପରାମାଣୁ ବୋମାର ସଂଯୋଗ କାର୍ଯ୍ୟ । ଏତେ ବଡ ବୋମା ବୋଧହୁଏ ପୃଥିବୀରେ ସର୍ବପ୍ରଥମଥର ପାଇଁ ନିର୍ମିତ ହୋଇଥିଲା । ଏହାକୁ ଏକ ବୃହତ୍ତ କ୍ରେନ ସାହାଯ୍ୟରେ ସାବଧାନତାର ସହ ଉଠାଇ ନିଆଯାଇ ରକେଟର ଅଗ୍ରଭାଗରେ ନିରୂପିତ ସ୍ଥାନରେ ସଂଯୋଗ କରାଯିବା କାର୍ଯ୍ୟ ଆରମ୍ଭ ହେଲା । ପ୍ରତି ସେକେଣ୍ଡରେ ବିପଦ ଲାଗିରହିଥିଲା । ପ୍ରାୟ ୪୦ମହଲା କୋଠାଘର ଉଚ୍ଚତାରେ ଡେଭିଡ୍ ରହି ଏହି

ବୋମାର ସଂଯୋଗ କାର୍ଯ୍ୟକୁ ନିଜେ ସଂଚାଳନ କରୁଥିଲେ । ବିଶ୍ୱର ଅନେକ ନେତୃବୃନ୍ଦ ନିକଟରେ ଏକ କଣ୍ଟ୍ରୋଲ ରୁମରେ ବସିରହି ଏହି କାର୍ଯ୍ୟର ଅଗ୍ରଗତିକୁ ଲକ୍ଷକରି ଚାଲିଥିଲେ । ଆସ୍ତେ ଆସ୍ତେ ପ୍ରକାଣ୍ଡ ବୋମା ଉଠୁଥିଲା । ଡେଭିଡ୍ ଓ ମାନବ ସମାଜର ପ୍ରାର୍ଥନା । ହେ ଈଶ୍ୱର ! ବୋମାକୁ ସୁଚାରୁରୂପେ ନିରୁପିତ ସ୍ଥାନରେ ପହଁଞ୍ଚାଅ, ମାନବ ସମାଜକୁ ରକ୍ଷାକର, ପୃଥିବୀକୁ ବିପଦରୁ ବଞ୍ଚାଅ । ପ୍ରାୟ ୧୨ଘଣ୍ଟା କାଳ ବୋମାକୁ ରକେଟରେ ସଂଯୋଗ କରିବା କାର୍ଯ୍ୟ ଚାଲିଲା । ଏହି କାର୍ଯ୍ୟ ସଂଚାଳନରେ ଲାଗିଥିଲେ



ଶହଶହ ବରିଷ୍ଠ ବୈଜ୍ଞାନିକ । କାହା ପୋଷାକ କଳା ରଙ୍ଗର ହୋଇଗଲାଣି, କାହା ଦେହରୁ ଝାଳ ବୋହି ସାରା ଦେହ ଓଦା ହୋଇଗଲାଣି, ମୁଣ୍ଡ କୁଣ୍ଡାଇ ନାହାଁନ୍ତି ଅନେକ ମାସମାସ ଧରି । କେତେବେଳେ କିଏ ଖାଇଛି, କଣ ଖାଇଛି, କିଛି କହିପାରିବେ ନାହିଁ ଜଣେ ହେଲେ । ଅବେଶେଷରେ ସେହି ଶୁଭବେଳା ଉପସ୍ଥିତ ହେଲା - ପରମାଣୁ ବୋମାକୁ ରକେଟର ଉପରି ଭାଗର ନିରୂପିତ ସ୍ୱତନ୍ତ୍ର ସ୍ଥାନରେ ଆସ୍ତେକରି ରଖି ଦିଆଗଲା । ପରେ ପରେ ନଟବୋଲ୍ଟ ଦିଆଯାଇ ଏହାକୁ ରକେଟ ସହ ଦୃଢ଼ଭାବେ ସଂଯୁକ୍ତ କରି ଦିଆଗଲା । ସମସ୍ତ କାର୍ଯ୍ୟ ଶେଷ, ଏଥର କେବଳ ଉତ୍‌କ୍ଷେପଣ । ଯୋଜନା ଅନୁସାରେ ସଂଘର୍ଷର ୨ମାସ ପୂର୍ବରୁ ଅର୍ଥାତ ଜାନୁଆରୀ ୧୦ ତାରିଖରେ ଏହି ପରମାଣୁ ବୋମାକୁ ମହାକାଶକୁ ଧୂମକେତୁ ନିକଟକୁ ଉତ୍‌କ୍ଷେପିତ କରାଯିବା କଥା । ମାତ୍ର ଦୁଇଦିନ ଡେରୀ ହୋଇଯାଇଥିଲା । ଆଜି ଜାନୁଆରୀ ୧୧ ତାରିଖ କାଲି ସକାଳୁ ଉତ୍‌କ୍ଷେପଣ ।

## ଉତ୍‌କ୍ଷେପଣ

ଜାନୁଆରୀ ୧୧ ତାରିଖ । ସମୟ - ସନ୍ଧ୍ୟା ୭ଟା । ପୃଥିବୀ ରକ୍ଷା କାର୍ଯ୍ୟକ୍ରମର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବୈଠକ ବସିଛି ସାଇବେରୀଆ ଉତ୍‌କ୍ଷେପଣ କେନ୍ଦ୍ରର ସମ୍ମିଳନୀ କୋଠରୀରେ । ଆଜି ହିଁ ସାଇବେରୀଆରେ ସମସ୍ତ ବୈଜ୍ଞାନିକମାନଙ୍କର ଶେଷ ଦିନ । କାରଣ ଆସନ୍ତାକାଲି ଏଠାରୁ ବୃହତ୍ତ ପରମାଣୁ ବୋମା ଉତ୍‌କ୍ଷେପଣ ବେଳେ ତରତରରେ ଏହି ଅଞ୍ଚଳରେ ନିର୍ମାଣ କରାଯାଇଥିବା ଗବେଷଣାଗାର, ବିମାନଘାଟୀ, କୋଠାବାଡି କାହାର ଅସ୍ତିତ୍ୱ ହୁଏତ ରହିବ ନାହିଁ । ପ୍ରଚଣ୍ଡ ପରମାଣୁ ଶକ୍ତି ସଂପନ୍ନ ରକେଟ ଉତ୍‌କ୍ଷେପିତ ହେବାବେଳେ ଯେଉଁ ପ୍ରଚଣ୍ଡ ଅଗ୍ନିର ଝଲକ ସୃଷ୍ଟିକରିବ ତାହା କେତୋଟି ପରମାଣୁ ବୋମାର ଶକ୍ତି ସହ ସମାନ ହୋଇଥିବାରୁ ସୃଷ୍ଟି ହୋଇଥିବା ଉତ୍ତାପରେ ଏସବୁ ପଦାର୍ଥ ଧ୍ୱଂସ ପାଇବ ଓ ଆଜି ଯେଉଁ ଅଞ୍ଚଳ ଉଜ୍ଜ୍ୱଳ ଆଲୋକମାଳାରେ ଝଲସୁଛି ତାହା ଆସନ୍ତା କାଲି ମହା ଶ୍ମଶାନରେ ପରିଣତ ହେବ ।

ପୃଥିବୀ ରକ୍ଷା କାର୍ଯ୍ୟକ୍ରମର ଶେଷ ବୈଠକରେ ଉପସ୍ଥିତ ଅଛନ୍ତି ବିଭିନ୍ନ ଦେଶର ରାଷ୍ଟ୍ରପତି, ନେତୃବୃନ୍ଦ, ସମସ୍ତ ବଡବଡ ବୈଜ୍ଞାନିକ ଓ କେତେକ କର୍ମଚାରୀ । ଏହି



ଯୋଜନାର ମୁଖ୍ୟ ଡେଭିଡ୍‌କୁ ଏବେ ଆଉ ଚିହ୍ନି ହେଉ ନାହିଁ । ଅବିଶ୍ରାନ୍ତଭାବେ ଗତ ୨ମାସରୁ ଅଧିକ କାଳ କାର୍ଯ୍ୟ କରିକରି ସେ ଦୁର୍ବଳ ହୋଇପଡିଲେଣି । ଆଖି ପଶିଗଲାଣି । ଦୁଇମାସ କାଳ ସେ କେବଳ ପୃଥିବୀ ରକ୍ଷା ବିଷୟରେ ଚିନ୍ତା କରିଛନ୍ତି । ଏବେ ତାଙ୍କ ମୁଣ୍ଡରୁ ବୋଝ ଯାଇଛି କହିଲେ ଅତ୍ୟୁକ୍ତି ହେବନାହିଁ, କିନ୍ତୁ ଯେପର୍ଯ୍ୟନ୍ତ କାର୍ଯ୍ୟରେ ସଫଳତା ମିଳିନାହିଁ ସେଯାଏ ନିସ୍ତାର ନାହିଁ ।

ଥରିଥରି ଉଠୁଥିଲେ ଡେଭିଡ୍ । ସମସ୍ତଙ୍କୁ ହାତଯୋଡି ସେମାନଙ୍କର ଅବିଶ୍ରାନ୍ତ କଠିନ କାର୍ଯ୍ୟପାଇଁ ଧନ୍ୟବାଦ ଅର୍ପଣ କରୁଥିଲେ । ତାଙ୍କ ଚକ୍ଷୁରୁ ବୋହୁଥିଲା

ସଫଳତାର ଲୋତକ ଧାରା । ସେ କିଛି କହିପାରୁ ନଥିଲେ । ଆସନ୍ତା କାଲି ହିଁ ତାଙ୍କ କାର୍ଯ୍ୟକ୍ରମର ଶେଷ କରିସ୍ଥା । ଯୁକ୍ତରାଷ୍ଟ୍ର ରାଷ୍ଟ୍ରପତି ଓ ଅନ୍ୟ ନେତୃବୃନ୍ଦ ଠିଆହୋଇ ସମସ୍ତ ବୈଜ୍ଞାନିକମାନଙ୍କୁ ଧନ୍ୟବାଦ ଜଣାଉଥିଲେ । ଆଜି ରାତ୍ରିରେ ସମସ୍ତ ବୈଜ୍ଞାନିକମାନଙ୍କୁ ଫେରିଯିବାକୁ ହେବ ତୁଙ୍ଗସ୍କା ଉତ୍‌କ୍ଷେପଣ କେନ୍ଦ୍ର ଛାଡି ବହୁ ଦୂରକୁ । ଏଥିପାଇଁ ପ୍ରସ୍ତୁତହୋଇ ରହିଛି ଶହଶହ ବିମାନ । କାରଣ ଉତ୍‌କ୍ଷେପଣ ସମୟରେ କେତେବେଳେ କଣ ଘଟିବ କିଏ କହିବ ? ହାତରେ ଆଉ ସମୟ ନାହିଁ । ଏବେଠାରୁ ଏହି ଅଞ୍ଚଳ ଖାଲିକରିବା କାର୍ଯ୍ୟ ଆରମ୍ଭ ହେବ । ଆକାଶକୁ ମୁଣ୍ଡଟେକି ଠିଆହୋଇଛି ବିଶାଳ ରକେଟ । ଆକାଶକୁ ଆଛାଦିତକରି ଉଦୟ ହେଲାଣି ଦାନବ ଧୂମକେତୁ । କାଲି ସକାଳୁ ଧୂମକେତୁ ନିକଟକୁ ଏହି ରକେଟର ଯାତ୍ରା ଓ ପରେ ପରେ ସଂଘର୍ଷ । ଏହାର ସଫଳତା ଉପରେ ନିର୍ଭର କରୁଛି ପୃଥିବୀ ସୁରକ୍ଷାର ପ୍ରଶ୍ନ । ହଜାର ହଜାର ଆଲୋକମାଳାରେ ଉଦ୍‌ଭାସିତ ତୁଙ୍ଗସ୍କା ଉତ୍‌କ୍ଷେପଣ କେନ୍ଦ୍ର ଆଜି ଶେଷ କେତେ ଘଣ୍ଟାପାଇଁ ଉଜ୍ଜ୍ୱଳତାରେ ଝଲସୁଛି । ଏହି ରକେଟଠାରୁ ପ୍ରାୟ ୪ କିଲୋମିଟର ଦୂରରେ ନିର୍ମିତ ହୋଇଛି କଣ୍ଟ୍ରୋଲ ରୁମ । ଏହିଠାରୁ ସୁଇଚ୍ ଦବାଇ ରକେଟକୁ ସଂଚାଳନ କରିବାକୁ ହେବ । ଏହି କାର୍ଯ୍ୟ ହିଁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ଜଣ ଜଣକରି ବୈଜ୍ଞାନିକମାନେ ଡେଭିଡ୍‌ଙ୍କଠାରୁ ବିଦାୟ ନେଉଥିଲେ । ରବର୍ଟ, ସ୍କଟ, ଷ୍ଟେହୋଲ ଜଣକ ପରେ ଜଣେ ସମସ୍ତେ ଏହି ବିପଦପୂର୍ଣ୍ଣ ଅଞ୍ଚଳ ଛାଡି ଚାଲିଯାଉଥିଲେ ସୁରକ୍ଷିତ ସ୍ଥାନକୁ । ଯୁକ୍ତରାଷ୍ଟ୍ର ରାଷ୍ଟ୍ରପତିଙ୍କ ପାଳି ପଡିଲାଣି । ସେ ଡେଭିଡ୍‌କୁ ଯିବା ବିଷୟରେ ପ୍ରଶ୍ନ କରୁଥିଲେ । ଡେଭିଡ୍ ରାଷ୍ଟ୍ରପତିଙ୍କ ପ୍ରଶ୍ନ ଶୁଣି କେବଳ ମୁରୁକି ହସୁଥିଲେ । ''ମୋର ଯିବାର ସମୟ ହୋଇ ନାହିଁ, ଯେ ପର୍ଯ୍ୟନ୍ତ ରକେଟ ଉତ୍‌କ୍ଷେପଣ ନ ହୋଇଛି ମୁଁ ଯିବି କୁଆଡେ ।'' କହୁଥିଲେ ଡେଭିଡ୍ । ଏକଥା ଶୁଣି ରବର୍ଟ, ମୁରୀ ପ୍ରମୁଖ ଫେରିଲେଣି ଡେଭିଡ୍‌ଙ୍କ ନିକଟକୁ । କଣ କହୁଛନ୍ତି ଡେଭିଡ୍ । ସେ ଏଠାରେ ରହିବେ ଉତ୍‌କ୍ଷେପଣ ଯାଏ । ଏହା କଣ ସମ୍ଭବ । ଉତ୍‌କ୍ଷେପଣ ସମୟରେ ଏହି ଅଞ୍ଚଳର ଅବସ୍ଥା ଯେ କଣ ହେବ ତାହା ଅନୁମାନ କରି ନେଉଥିଲେ ବରିଷ୍ଠ ବୈଜ୍ଞାନିକମାନେ । ''ଆମେ ଆପଣଙ୍କୁ ଏଠାରେ ଛାଡି ଆଦୌ ଯିବୁ ନାହିଁ'' ଅଭିମାନ ଭରା କଣ୍ଠରେ କହୁଥିଲେ ରବର୍ଟ । ଡେଭିଡ୍ କିନ୍ତୁ ନିଜ ଜିଦରେ ଅଟଳ ଥିଲେ । ନିଜେ ନରହିଲେ ଏତେ ବଡ ଯୋଜନା ଶେଷରେ ସାମାନ୍ୟ ଭୁଲପାଇଁ ଧ୍ୱଂସ ହୋଇଯିବାର ସମ୍ଭାବନା ଥିବାରୁ ସେ କେବେହେଲେ ନିଜକୁ ବଞ୍ଚାଇ ରଖିବାକୁ ଏହି ସ୍ଥାନ ଛାଡି

ଯିବେ ନାହିଁ ବୋଲି ଦୃଢ଼ତାର ସହ କହୁଥିଲେ ଡେଭିଡ୍ । ତାଛଡା ଉତ୍କ୍ଷେପଣ ଦ୍ୱାରା ନିୟନ୍ତ୍ରଣ କକ୍ଷ କ୍ଷତିଗ୍ରସ୍ତ ହେବାର ସମ୍ଭାବନା ନଥିବାରୁ ଏଥିନେଇ ଚିନ୍ତାକରିବା ଅନାବଶ୍ୟକ ବୋଲି ସେ ବୁଝାଉଥିଲେ ସମସ୍ତଙ୍କୁ । ପୃଥିବୀ ସୁରକ୍ଷାର ପ୍ରଶ୍ନ ଯେଉଁଠି ଜଡିତ ସେତେବେଳେ ତାଙ୍କ ସହ ଯୁକ୍ତି କରିବାକୁ ପସନ୍ଦ କରୁନଥିଲେ ଯୁକ୍ତରାଷ୍ଟ୍ରର ରାଷ୍ଟ୍ରପତି । ସେ ଦୃଢ଼ ନିଶ୍ଚିତଥିଲେ ଯେ ଡେଭିଡ୍‌ଙ୍କଭଳି ବରିଷ୍ଠ ବୈଜ୍ଞାନିକ ନିଜର ସୁରକ୍ଷା ଦାୟିତ୍ୱ ନିଶ୍ଚୟ ଦୃଢ଼ କରିଥିବେ । ବିଦାୟ ନେଉଥିଲେ ନେତୃବୃନ୍ଦ କିନ୍ତୁ ବରିଷ୍ଠ ବୈଜ୍ଞାନିକମାନଙ୍କ ଚକ୍ଷୁରେ ଲୋତକର ବନ୍ୟା ଖେଳାଇ ଶେଷଥର ପାଇଁ ଡେଭିଡ୍‌ଙ୍କଠାରୁ ବିଦାୟ ନେଉଥିଲେ । ଡେଭିଡ୍ ରବର୍ଟଙ୍କୁ ଏକ ନିବୁଜ ଖାତା ଦେଉଦେଉ କହିଥିଲେ ଯଦି ପୃଥିବୀ ତିଷ୍ଠିରହେ ତେବେ ଏହି ଖାତାକୁ ଖୋଲିବ ରବର୍ଟ । ନଚେତ ପୃଥିବୀ ଧ୍ୱଂସହେବା ପୂର୍ବରୁ ଏହାକୁ ଅଗ୍ନି ଭିତରକୁ ଫିଙ୍ଗିଦେଇ ଜାଳିଦେବ । ସମୟ ଶେଷ । ଶେଷ ବିମାନର ଯାତ୍ରାପାଇଁ ସବୁ ପ୍ରସ୍ତୁତି ସରିଲାଣି । ରୋଜିଙ୍କୁ ବିଦାୟ ଦେବାପାଇଁ ଆଗଉଥିଲେ ଡେଭିଡ୍ । ଯାଅ ରୋଜି, ତୁମେ ସୁରକ୍ଷିତ ଅଞ୍ଚଳକୁ ଚାଲିଯାଅ । ଅଭିମାନଭରା କଣ୍ଠରେ ରୋଜି କହୁଥିଲେ - ତୁମେ ଏକଥା କହିପାରୁଛି ଡେଭିଡ୍ । ତମକୁ ମୁଁ ନିୟନ୍ତ୍ରଣ କକ୍ଷରେ ଏକୁଟିଆ ଛାଡିଦେଇ ଚାଲିଯିବି ଏହା କଣ ସମ୍ଭବ ।

ଶେଷ ବିମାନ ଉଡାଣର ସିଗନାଲ ଦିଆଗଲା । ନିୟନ ଆଲୋକରେ ଉଦ୍‌ଭାସିତ ତୁଙ୍ଗସ୍କା ଉତ୍କ୍ଷେପଣ କେନ୍ଦ୍ରର ସମସ୍ତ କୋଳାହଳ ଆଜି ନୀରବ, ନିସ୍ତବ୍ଧ । ଏତେବଡ ଅଞ୍ଚଳରେ ଡେଭିଡ୍, ରୋଜିଙ୍କ ବ୍ୟତୀତ ଆଉ ଅଳ୍ପ କେତେଜଣ ସୁରକ୍ଷାକାରୀ ଓ ସାହାଯ୍ୟକାରୀ । ହାତ ଧରାଧରି ହୋଇ ଚାଲିଥିଲେ ଡେଭିଡ୍ ଓ ରୋଜି ନିୟନ୍ତ୍ରଣ କକ୍ଷ ଆଡେ । ଗାଡିରେ ବସିଗଲେ ଦୁଇଜଣ । ଆଜି ରାତ୍ରି ବୋଧହୁଏ ସେମାନଙ୍କ ଜୀବନର ଶେଷ ରାତ୍ରୀ ।

ହାତରେ ଆଉ ସମୟ ନାହିଁ ରୋଜି । କାଲି ଠିକ୍ ସକାଳ ୭ଟାରେ ଉତ୍କ୍ଷେପଣ କାର୍ଯ୍ୟକ୍ରମ । ତା ପୂର୍ବରୁ ସମସ୍ତ ବ୍ୟବସ୍ଥାକୁ ଆଉଥରେ ତନ୍ନ ତନ୍ନକରି ପରୀକ୍ଷା କରିବାକୁ ହେବ । ସାମାନ୍ୟ ଟିକେ ଖାଦ୍ୟ ଖାଇବାପରେ ଅଳ୍ପ କଫି ପିଉଥିଲେ ଉଭୟ ସ୍ୱାମୀ ସ୍ତ୍ରୀ । ଜୀବନରେ ସାରା ପୃଥିବୀ ସେମାନେ ବୁଲିଛନ୍ତି । ଆଜି ସେମାନେ ସଫଳତାର ଉତ୍କର୍ଷତାରେ ବିଭୋର । ହୁଏତ ସେମାନେ ଆଗାମୀ ଦିନରେ ଥାଇପାରନ୍ତି ବା ନ

ଥାଇପାରନ୍ତି କିନ୍ତୁ ଯଦି ସେମାନେ ସଫଳହେଲେ ତେବେ ପୃଥିବୀବାସୀଙ୍କ ନିକଟରେ ସେମାନେ ଦେବତାଙ୍କଠାରୁ ମଧ୍ୟ ଅଧିକ ସମ୍ମାନର ସହ ପୂଜିତ ହେବେ । ଡେଭିଡ୍‌ଙ୍କ ହାତ ଧରିଧରି ନିୟନ୍ତ୍ରଣ କକ୍ଷ ଭିତରକୁ ଯାଉଥିଲେ ରୋଜି.....ଏବେ ମାତ୍ର ଗୋଟିଏ ରାତ୍ରି ।

ପାହାନ୍ତିଆ ତାରା ଧୂମକେତୁର ଉଜ୍ଜ୍ୱଳ ଆଲୋକ ଭିତରେ କେଉଁଠି ଲୁଚିଛି ଜାଣିବାର ଉପାୟ ନାହିଁ । ଆଗରେ ପ୍ରକାଣ୍ଡ ରକେଟ । ଜାନୁଆରୀ ୧୨ ତାରିଖ ସକାଳ ୫.୩୦ ମିନିଟ । ଗତ କାଲି ରାତ୍ରିରୁ ଓଲଟା ଗଣନା ଆରମ୍ଭ ହୋଇସାରିଛି । ଆକାଶରେ ଦୋଳିଖେଳୁଛି ମେଘ । ସୂର୍ଯ୍ୟୋଦୟ ତଥାପି ବାକୀ ଅଛି । ସାରା ପୃଥିବୀ ପାଇଁ ଆଜି ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଦିବସ । ସବୁଆଡେ ଆଜି ଚାଲିଛି ପୂଜାର୍ଚ୍ଚନା । ଆକୁଳଭାବେ ମାନବ ଆଜି ପ୍ରାର୍ଥନା କରୁଛି ହେ ଭାଗବାନ ! ଏହି ସୁନ୍ଦର ପୃଥିବୀକୁ ରକ୍ଷାକର । ସାଇବେରୀଆ ଆକାଶରେ ପ୍ରାତଃ ପକ୍ଷୀଙ୍କର ଉଡିବାର ଆଭାସ ନାହିଁ । ଦୂର ସାଗର ଜଳରେ କେତୋଟି ପାଣି ପକ୍ଷୀ ଆନନ୍ଦରେ କେଳି କରୁଥିବାର ଦେଖାଯାଉଛି । କ୍ରମେ ଉଜ୍ଜ୍ୱଳତା ମାଡିଆସୁଛି ପୃଥିବୀ ଉପରକୁ । ପୃଥିବୀର ସବୁଆଡେ ଆଲୋଡନ । ଉତ୍‌କ୍ଷେପଣ କାର୍ଯ୍ୟକ୍ରମ ଦେଖିବାପାଇଁ ବୈଜ୍ଞାନିକମାନେ ବିଭିନ୍ନ ଗବେଷଣା କେନ୍ଦ୍ରରେ ଏକତ୍ରିତ ହୋଇ ସାରିଲେଣି କେତେବେଳୁ । ଧୂମକେତୁ ଆଡକୁ ପୃଥିବୀର ସମସ୍ତ ବୃହତ୍ତ ଦୂରବୀକ୍ଷଣ ଯନ୍ତ୍ର ମୁହାଁଇ ରଖାଯାଇଛି । ସବୁ କାର୍ଯ୍ୟ ପ୍ରାୟ ଶେଷ । ସମୟ କ୍ରମେ ନିକଟ ହୋଇ ଆସୁଛି । ରକେଟକୁ ଧରି ରଖିଛି ଅନେକ ଶକ୍ତିଶାଳୀ ଲୁହାର ସ୍ତମ୍ଭ । ନିୟନ୍ତ୍ରଣ କକ୍ଷର କାଚ୍ ଝରକାଦେଇ ରକେଟର ସଂପୂର୍ଣ୍ଣ ରୂପରେଖ ଦେଖାଯାଉଛି ।

ସମୟ ୬ଟା ଟପିଗଲା । ଆଉ ମାତ୍ର କେତେ ମିନିଟ । ଠିକ୍ ୭ଟାରେ ଉତ୍‌କ୍ଷେପଣ । ରୋଜିଙ୍କ ଆଖିରୁ ବୋହୁଥିଲା ଆନନ୍ଦର ଅଶ୍ରୁ । ଡେଭିଡ୍ ମଧ୍ୟ କ୍ରମେ ବିଚଳିତ ହେଲାପରି ଦେଖାଯାଉଥିଲେ । ପରିଶେଷରେ ସେହି ଶୁଭ ମୂହୁର୍ତ୍ତ ଉପସ୍ଥିତ ହେଲା । ଏହି ଯୁଗାନ୍ତକାରୀ ଉତ୍‌କ୍ଷେପଣ ଦେଖିବାକୁ ଆଜି ସାରା ବିଶ୍ୱ ଚଳଚଞ୍ଚଳ । ସବୁ ଗବେଷଣାଗାର ଆଜି ତତ୍ପର । ୩ ମିନିଟ - ୨ ମିନିଟ - ୧ ମିନିଟ - ୪୦ ସେକେଣ୍ଡ - ୨୦ ସେକେଣ୍ଡ - ୧୦ ସେକେଣ୍ଡ - ୫ ସେକେଣ୍ଡ - ଶେଷରେ ଶୁନ୍ୟ । ଡେଭିଡ୍‌ଙ୍କ ହାତ ରୋଜିଙ୍କ କର ସ୍ପର୍ଶକରି ସାରିଥିଲା କେତେବେଳୁ । ଏଥିସହ

ସୃଷ୍ଟିହେଲା ଅଗ୍ନିର ବନ୍ୟା - ପ୍ରଚଣ୍ଡ ବିସ୍ଫୋରଣ । ଧୂଆଁ ଓ ବିସ୍ଫୋରଣରେ ସମଗ୍ର ଅଞ୍ଚଳ ନିମିଶକ ମଧ୍ୟରେ ପୂର୍ଣ୍ଣ ହୋଇଗଲା । ଡେଭିଡ୍ ଦେଖୁଥିଲେ ରକେଟଟି ଠିକ୍ ଭାବେ ଆକାଶକୁ ଉଠୁଛି - ବାସ୍ ସେତିକି - ତା'ପରେ ସବୁଆଡେ ସତେ ଯେପରି ଉଜ୍ଜ୍ୱଳ ଦୀପ୍ତିମୟ ଆଲୋକର ଖେଳ ଆରମ୍ଭ ହେଲା । ଗୋଟିଏପରେ ଗୋଟିଏ କୋଠାଘର ଧୂଳିସାତ ହେଲା । ସବୁ ଲୁହା, ଧାତବ ପଦାର୍ଥପୂର୍ଣ୍ଣ ପଦାର୍ଥ ପାଣିପରି ବହୁଥିଲା ବରଫାବୃତ୍ତ ସାଇବେରୀଆରେ - ଏହି କେନ୍ଦ୍ରଠାରୁ ବହୁ ଦୂରରେ ବୈଜ୍ଞାନିକମାନେ ବସିରହି ସର୍ବବୃହତ୍ତ ରକେଟ ଉତ୍‌କ୍ଷେପଣର ବିଭୀଷିକାମୟ ରୂପ ଦେଖୁଥିଲେ । ମହାକାଶଆଡେ ଆଗେଇ ଚାଲିଥିଲା ଏହି ପରମାଣୁ ବୋମାବାହୀ ରକେଟ କ୍ଷୀପ୍ର ଗତିରେ । ସମସ୍ତେ ଅନିସନ୍ଧିତ୍ସୁ ହୋଇ ଅପେକ୍ଷା କରିଥିଲେ ପରବର୍ତ୍ତୀ କାର୍ଯ୍ୟକ୍ରମକୁ । ମହାକାଶରେ ଧୂମକେତୁର ନିକଟବର୍ତ୍ତୀ ହେଉଥିଲା ଏହି ବୋମାବାହୀ ରକେଟ । ଏଥି ସହ ସମସ୍ତ ବୈଜ୍ଞାନିକଙ୍କର ହୃଦସ୍ପନ୍ଦନ ବଢ଼ିବାରେ ଲାଗିଥିଲା..... ସତେ କଣ ମାନବ ତାର ଶେଷ ଚେଷ୍ଟାରେ ସଫଳ ହେବ, ପୃଥିବୀ ରକ୍ଷା ପାଇବ ?



# ସଂଘର୍ଷ

ହଠାତ୍ ଏକ ଅଘଟଣ ଘଟିଲା । ରାତ୍ରି ଦିନ ହୋଇଗଲା । ଆକାଶରେ ଉଦିତ ହେଲେ ଶତଶତ ଚନ୍ଦ୍ର । ଆଲୋକ ବର୍ଣ୍ଣାଳୀର ଦୋଳିଖେଳ ସହ ଆକାଶଆଡୁ ପୃଥିବୀପୃଷ୍ଠକୁ ଖସୁଥିଲା ଶହଶହ ଆଲୋକ ପିଣ୍ଡ । ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ମହାକାଶରେ ଏହି ଅଲୌକିକ ଦୃଶ୍ୟ ଦେଖୁଥିଲେ ବିଶ୍ୱର ଅନେକ ବୈଜ୍ଞାନିକ । ନିର୍ଦ୍ଧାରିତ ସମୟରେ ଧୂମକେତୁ ସହ ସଂଘର୍ଷ ଘଟିଲା ପରମାଣୁ ବୋମାର । ସେଠାରେ ସୃଷ୍ଟିହେଲା ପ୍ରଳୟ । ପ୍ରଚଣ୍ଡ ବେଗଗାମୀ ଧୂମକେତୁ ଦୋହଲିଗଲା । ଏହାର ଶରୀରର ଗୋଟିଏ ଅଂଶ ଧ୍ୱଂସ ପାଇବାସହ ଖଣ୍ଡ ବିଖଣ୍ଡିତ ହୋଇଗଲା । କେତେକ ବୃହତ୍ତ ଖଣ୍ଡ ବିଛାଡି ହୋଇପଡିଲା । ମହାକାଶର ବିଭିନ୍ନ ଅଞ୍ଚଳରେ ଆଉ କେତେକ ଖଣ୍ଡ ପୃଥିବୀର ମାଧ୍ୟାକର୍ଷଣ ଦ୍ୱାରା ଆକ୍ରାନ୍ତହୋଇ ଜଳିଜଳି ଖସୁଥିଲା ପୃଥିବୀ ଆଡେ । ଓଃ ! କି ଭୀଷଣ ସେହି ଦୃଶ୍ୟ । ଧୂମକେତୁର ଅଗ୍ରଭାବ ଖଣ୍ଡବିଖଣ୍ଡିତ ହେବାସହ ଏହାର ଗତିପଥରେ ପରିବର୍ତ୍ତନ ଦେଖାଦେଲା । ବୈଜ୍ଞାନିକମାନେ ଟକିନିଖି ଭାବେ ଏହା ପୃଥିବୀଠାରୁ କେତେ ଡିଗ୍ରୀ କୋଣରେ ଅତିକ୍ରମ କରିଯିବ ସେଥିନେଇ ହିସାବ କରୁଥିଲେ । ଏକ ପଟିଆ ହୋଇ ଏହି ଧୂମକେତୁ କ୍ଷୀପ୍ର ଗତିରେ ଆଗେଇ ଚାଲିଥିଲା ପୃଥିବୀ ପାର୍ଶ୍ୱଦେଇ ଆଗକୁ ଆଗକୁ । ଏହାର ପୁଚ୍ଛର ଅନେକ ଅଂଶ ଧ୍ୱଂସପାଇ ଝଡିପଡୁଥିଲା ପୃଥିବୀ ଉପରକୁ । ବହୁ ସମୟ ଯାଏ । ସେଦିନ ସାରା ବିଶ୍ୱର କୋଟି କୋଟି ଲୋକ ଆକାଶରେ ଆଲୋକର ଜ୍ୱଳନ୍ତ ପିଣ୍ଡର ରୂପ ଦର୍ଶନ କରି ଭୟଭିତ ହୋଇଗଲେ । ଅନେକ କଣ ଘଟୁଛି କିଛି ବୁଝିପାରୁ ନଥିଲେ । ଏକ ସଙ୍ଗେ ସତେ ଯେପରି ହଜାର ହଜାର ତାରା ପୃଥିବୀ ଉପରକୁ ଖସିପଡୁଥିଲା ଏଭଳି ମନେ ହେଉଥିଲା । ପୃଥିବୀର ସମୁଦ୍ର ଭାଗରେ ଏଥିରୁ ଅନେକ ପଡିଥିଲା । ଆଉ କେତେକ ଭୂଭାଗରେ ପଡିଲା ।

ଉତ୍କ୍ଷେପଣ କେନ୍ଦ୍ରଠାରୁ କିଛି ଦୂର ସାଗର ବକ୍ଷରେ ଅପେକ୍ଷାରତ ଅନେକ ଜାହଜରୁ ବହୁ ବ୍ୟକ୍ତି ନିର୍ମଳ ଆକାଶରୁ ଖସୁଥିବା ଏ ପ୍ରକାର ଅଲୌକିକ ଦୃଶ୍ୟ

ଦେଖୁଥିଲେ । ସାରା ଆକାଶଟା ଉଜ୍ଜ୍ୱଳ ଆଲୋକରେ ଉଦ୍‌ଭାସିତ ହେଉଥିଲା । ଜଣାପଡୁଥିଲା ଆକାଶରେ କିଛି ଗୋଟାଏ ବିସ୍ଫୋରଣ ଘଟିଛି । ନାରଙ୍ଗୀ ଆଲୋକର ବର୍ଣ୍ଣାଳୀରେ ସବୁଆଡ ପ୍ରଜ୍ଜ୍ୱଳିତ ହେଲାପରି ଦୃଷ୍ଟି ଗୋଚର ହେଉଥିଲା । ଏହା ପ୍ରାୟ ୨୫ ମିନିଟ ଯାଏ ଚାଲିଲା । ବୈଜ୍ଞାନିକମାନେ ଏହି ବିରଳ ଦୃଶ୍ୟର ଆଲୋକ ଚିତ୍ର ଗ୍ରହଣ କରିନେଲେ । ସଂଘର୍ଷ ବେଳର ଚିତ୍ର ପୃଥିବୀର ଅନେକ ଦୂରବୀକ୍ଷଣ ଯନ୍ତ୍ର ଗ୍ରହଣ କରିଥିଲା । ଦିନ ରାତ୍ରି ଅକ୍ଲାନ୍ତ ପରିଶ୍ରମକରି ପୃଥିବୀ ରକ୍ଷାପାଇଁ କାର୍ଯ୍ୟ କରିଥିବା ଅନେକ ବୈଜ୍ଞାନିକ ଆଶ୍ୱସ୍ତ ହେଲେ ।



# ପୃଥିବୀ ନିକଟଦେଇ ଅତିକ୍ରମ

ତା ପରଦିନ ମଧ୍ୟ ପୃଥିବୀର ଉତ୍ତାପ କମିବାର କୌଣସି ସମ୍ଭାବନା ଦେଖା ଯାଉନଥିଲା । ପୃଥିବୀ ନିକଟ ମହାକାଶରେ ଘଟିଥିବା ବୃହତ୍ତ ଦୁର୍ଘଟଣାରୁ ଯେତେ ଶକ୍ତି ଓ ତେଜସ୍କ୍ରିୟ ପଦାର୍ଥ ସୃଷ୍ଟି ହୋଇଥିଲା ତାର କେତେକ ଭାଗ ପୃଥିବୀ ଉପର ବାୟୁମଣ୍ଡଳଯାଏ ଚାଲିଆସିବାର ସମ୍ଭାବନା ରହିଥିଲା । ବୈଜ୍ଞାନିକମାନେ ହିସାବକରି କହିଲେଣି ପୃଥିବୀଠାରୁ ପ୍ରାୟ ୫୦ ହଜାର କିଲୋମିଟରେ ଦୂରଦେଇ ଏହି ଧୂମକେତୁର ଗତିପଥ ପରମାଣୁ ବିସ୍ଫୋରଣ ପରେ ପରିବର୍ତ୍ତିତ ହୋଇପାରିଛି । କିନ୍ତୁ କାର୍ଯ୍ୟରେ ଏହାଠାରୁ ଅଧିକ ହେଲା । ପୃଥିବୀ ଧ୍ୱଂସର ଲକ୍ଷ ଛାଡି ଏହି ବିଶାଳ ଖଣ୍ଡିତ ଧୂମକେତୁ କ୍ରମେ ମହାଶୂନ୍ୟ ଆଡେ ଆଗେଇ ଚାଲିଲା ଦିଗହୀନ ହୋଇ । ବୈଜ୍ଞାନିକମାନଙ୍କ କାର୍ଯ୍ୟକ୍ରମକୁ ପ୍ରଶଂସା କରୁଥିଲେ ଆମେରିକା ରାଷ୍ଟ୍ରପତି ଓ ବିଶ୍ୱର ପ୍ରମୁଖ ନେତାଗଣ । ମାତ୍ର ଏହି କାର୍ଯ୍ୟକ୍ରମର ନିୟନ୍ତକଙ୍କ କଥା ଭୁଲିଯାଇଥିଲେ ଅନେକ । କୁଆଡେ ଗଲେ ଡେଭିଡ୍ । ରାଷ୍ଟ୍ରପତି ନିର୍ଦ୍ଦେଶ ଦେଲେ ଡେଭିଡ୍‌ଙ୍କ ବିଷୟରେ ତଥ୍ୟ ତୁରନ୍ତ ସଂଗ୍ରହ କରାଯାଉ ଏବଂ ତାଙ୍କୁ ତୁରନ୍ତ ନିରାପଦ ସ୍ଥାନକୁ ଅଣାଯାଉ । ଏକୁଟିଆ ବିପଦପୂର୍ଣ୍ଣ ଅଞ୍ଚଳରେ ତାଙ୍କୁ ଓ ଅନ୍ୟ କେତେଜଣଙ୍କୁ ଅସହାୟଭାବେ ଯେ ଛାଡି ଦିଆଯାଇଥିଲା ଏକଥା ସଂଘର୍ଷର କୋଳାହଳ ଭିତରେ ଅନେକ ଭୁଲିଯାଇଥିଲେ ସଙ୍ଗେ ସଙ୍ଗେ ରାଷ୍ଟ୍ରପତିଙ୍କ ନିର୍ଦ୍ଦେଶ ପାଳିତ ହେଲା ।

ହାୟ ଡେଭିଡ୍ !

ଉତ୍କ୍ଷେପଣ କେନ୍ଦ୍ର ନିକଟ ସାଗର ବକ୍ଷରେ ଥିବା ସାହାଯ୍ୟକାରୀ ଜଳ ଜାହାଜ 'କୁଇନ ମେରୀ'ରେ ଥିବା ଏକାଧିକ ହେଲିକପ୍ଟରକୁ ପଠାଗଲା ତୁଙ୍ଗସ୍କା ଉତ୍କ୍ଷେପଣ କେନ୍ଦ୍ର ନିକଟକୁ । ପରମାଣୁ ରକେଟକୁ ଇତିମଧ୍ୟରେ ପଠାଯିବାର ୨୪ ଘଣ୍ଟା ବିତିଗଲାଣି । ବହଳିଆ ଧୂଆଁପୂର୍ଣ୍ଣ ଉତ୍କ୍ଷେପଣ ଅଞ୍ଚଳ କ୍ରମେ ସଫା ହୋଇ ଆସିଲାଣି । କିଛି ଘଣ୍ଟା ପୂର୍ବରୁ ନୀୟନ ଆଲୋକରେ ଦିନ ରାତ୍ରି ଚମକୁ ଥିବା

କୋଳାହଳମୟ ସାଇବେରୀଆରେ ଏବେ ପ୍ରଚ଼ଣ୍ଡ ନୀରବତା । ଉଡୁଥିବା ହେଲିକପ୍ଟରରେ ରହି ଅନେକ ଉଦ୍ଧାରକାରୀ ଉତ୍କ୍ଷେପଣ ଅଞ୍ଚଳଦେଇ ଉଡିଯାଉ ଥିବାବେଳେ ଲକ୍ଷ କରୁଥିଲେ ସେହି ଅଞ୍ଚଳକୁ । ସତେ ଯେପରି ଯୁଦ୍ଧ ବିଧ୍ୱଂସ୍ତ ଏକ ବୃହତ୍ତ ପୋଡାଜଳା ଅଞ୍ଚଳ । ଯେଉଁ ସ୍ଥାନରୁ ରକେଟ ଉତ୍କ୍ଷେପିତ ହୋଇଥିଲା ସେଠାରେ କୌଣସି ଚିହ୍ନବର୍ଣ୍ଣ ନାହିଁ, ଏପରିକି ରକେଟିକୁ ସ୍ଥାପନ କରାଯାଇଥିବା ଏକାଧିକ ଲୌହ ସ୍ତମ୍ଭ ମଧ୍ୟ ପାଣିପରି ତରଳି ବୋହି ଯାଇଛି ପ୍ରଚ଼ଣ୍ଡ ଉତ୍ତାପରେ । ସୃଷ୍ଟି କରାଯାଇଥିବା ବିରାଟ କୃତ୍ରିମ ହ୍ରଦରେ ଜଳ ବିନ୍ଦୁଟିଏ ମଧ୍ୟ ନାହିଁ । କିଛି ଦୂରରେ ଥିବା ନିୟନ୍ତ୍ରଣ କକ୍ଷର ଚିହ୍ନବହ୍ନ ମଧ୍ୟ ନାହିଁ । ସବୁ ଧୂଳିସାତ, ସଦ୍ୟ ବୋମାମାଡ ହୋଇଥିବା ଏକ ବିକ୍ଷିପ୍ତ ଅଞ୍ଚଳର ଚ଼ିତ୍ର ସତେ ଯେପରି ସୃଷ୍ଟି ହୋଇଥିଲା ସେହିଠାରେ । ଉଜ୍ଜ୍ୱଳ ଆଲୋକକୁ ଧରିରଖି ଉଚ୍ଚ ଆକାଶରେ ଜଳୁଥିବା ପ୍ରାୟ ସବୁ ଶକ୍ତିଶାଳୀ ବିଦ୍ୟୁତ ଖୁଣ୍ଟ ତରଳିଯାଇଛି ସେହିଠାରେ ପ୍ରଚ଼ଣ୍ଡ ଉତ୍ତାପରେ । ହେଲିକପ୍ଟରକୁ ଏହି ଧ୍ୱଂସ ସ୍ତୁପ ଉପରେ ଓହ୍ଲାଇବାକୁ ନିର୍ଦ୍ଦେଶଦେଲେ ଉଦ୍ଧାରକାରୀ ଦଳର ନେତା ଟମବର୍ଗ । ସମସ୍ତ ଉଦ୍ଧାରକାରୀଙ୍କ ଦେହରେ ତେଜସ୍କ୍ରିୟତାରୁ ରକ୍ଷା ପାଇବାପାଇଁ ସୁରକ୍ଷା ପୋଷାକ ଓ ମୁହଁରେ ସ୍ୱତନ୍ତ୍ର ହେଲମେଟ । ପରମାଣୁ ରକେଟର ଯାତ୍ରା ପରେପରେ ସେହି ଅଞ୍ଚଳ ପୂର୍ଣ୍ଣ ହୋଇଯାଇଥିଲା ଏକ ପ୍ରକାର ତେଜସ୍କ୍ରିୟ ପଦାର୍ଥରେ ଯାହାକି ମଣିଷ ଶରୀରପାଇଁ ଅତ୍ୟନ୍ତ କ୍ଷତିକାରକ । ଏହା ଶରୀର ସଂପର୍ଶରେ ଆସିବା ମାତ୍ରେ ମୃତ୍ୟୁ ସୁନିଶ୍ଚିତ । ଏକ ମାଇକ୍ରୋଫୋନ ଦ୍ୱାରା ଟମବର୍ଗ ଚିତ୍କାର କଲେ ହୁଏତ କିଏ କେଉଁଆଡେ ଥାଇପାରନ୍ତି ତୁରନ୍ତ ସେମାନଙ୍କ ନିକଟକୁ ଚାଲିଆସିବାକୁ ମାତ୍ର ସବୁ ବ୍ୟର୍ଥତାରେ ପରିଣତ ହେଲା । ବହୁ ସମୟଯାଏ ସେ ଡାକ ଛାଡିଲେ ମଧ୍ୟ ପ୍ରତିଉତ୍ତର କିଛି ମିଳିଲା ନାହିଁ । ଟମବର୍ଗ ତାଙ୍କ ସହକାରୀଙ୍କ ସହ ଚାଲିଥିଲେ ଉତ୍କ୍ଷେପଣ ନିୟନ୍ତ୍ରଣ କକ୍ଷଆଡେ । ସେଠାରେ ତନ୍ନ ତନ୍ନ କରି ପରୀକ୍ଷା କାର୍ଯ୍ୟ ଚାଲିଥିଲା । ଭଗ୍ନ ନିୟନ୍ତ୍ରଣ କୋଠରୀର କେତେକ ଭଙ୍ଗାରୁଜା କମ୍ପ୍ୟୁଟର ପଡିରହିଥିଲା ଅଧାପୋଡା ହୋଇ ସେତେବେଳଯାଏ । ମାତ୍ର କାହାଁନ୍ତି ବିଶ୍ୱବିଖ୍ୟାତ ବୈଜ୍ଞାନିକ ଡେଭିଡ୍ ଓ ପତ୍ନୀ ରୋଜି । ସେ ଚିତ୍କାର କଲେ । ଭଗ୍ନ ସ୍ତୁପରୁ ପାଉଁଶ ଗଦା ଭିତରୁ ବହୁ ସମୟ ଖୋଜାଖୋଜି କଲେ ମାତ୍ର କିଛି ତଥ୍ୟ ମିଳିଲା ନାହିଁ ।

ଇତି ମଧ୍ୟରେ ଆଉ କେତେକ ଉଦ୍ଧାରକାରୀ ଦଳ ଆସି ପହଁଞ୍ଚି ସାରିଥିଲେ ଉତ୍କ୍ଷେପଣ କେନ୍ଦ୍ରରେ । ମାତ୍ର ହାୟ ! ସମସ୍ତେ ନିରାଶ ହେଲେ । ଡେଭିଡ୍ ଓ ପତ୍ନୀ

ରୋଜିଙ୍କର କୌଣସି ପତ୍ତା ମିଳିଲା ନାହିଁ । ଏହି ଦୁଃଖଦ ସମ୍ବାଦ ବିଶ୍ୱ ନେତୃବର୍ଗଙ୍କୁ ଜଣାଇ ଦିଆଗଲା । ପୃଥିବୀ ରକ୍ଷାପାଇ ଥିବାରୁ ଚାଲିଥିବା ଆନନ୍ଦ ଉଲ୍ଲାସ ମଧ୍ୟରେ ଏକ କଳାଦାଗ ଟାଣିଆଣି ସମସ୍ତେ ଦୁଃଖରେ ମ୍ରିୟମାଣ ହୋଇପଡିଲେ । ରବର୍ଟ ପ୍ରମୁଖ ଜାଣିଥିଲେ, ଡେଭିଡ୍ ଆଉ ଫେରିବେ ନାହିଁ । କାରଣ ବିଶାଳ ରକେଟର ପରମାଣୁ କୋଷ ଥରେ ସଂଚାଳିତ ହେବା ମାତ୍ରେ ସେହି ଅଞ୍ଚଳରେ ଉତ୍ତାପ ୩ ଲକ୍ଷ ଡିଗ୍ରୀ ସେଣ୍ଟିଗ୍ରେଡ ହେବା ପ୍ରାୟ ନିଶ୍ଚିତ ଯାହାକି ସବୁପଦାର୍ଥକୁ ଜଳାଇ ପୋଡିଦେବା ପାଇଁ ଯଥେଷ୍ଟ । ଏହି କରାଳ ଅବସ୍ଥାରୁ ଡେଭିଡ ଯେ ବଞ୍ଚି ରହିବେ ଏହା ଆଶା କରିବା ବୃଥା । ହାୟ ଡେଭିଡ୍ ! ତୁମେ ଶେଷରେ ମାନବ ସମାଜର କଲ୍ୟାଣପାଇଁ ସସ୍ତ୍ରୀକ ଜୀବନଦାନ ଦେଇ ଚାଲିଗଲ । ରବର୍ଟଙ୍କ ପାଟିରୁ ସ୍ୱତଃ ବାହାରି ଆସୁଥିଲା ଏହି କେଇପଦ କଥା ।



# କୋଳାଗ୍ରତ ପୃଥିବୀବାସୀ

ଆଜି ସକାଳୁ ସାରା ବିଶ୍ୱର ସବୁ ଟେଲିଭିଜନ ଓ ରେଡିଓ ପ୍ରଚାର କରୁଛି ପୃଥିବୀ ରକ୍ଷାର ସମସ୍ତ କାର୍ଯ୍ୟକ୍ରମର ଅତୀତ ଘଟଣାବଳୀର ଧାରା ବିବରଣୀ । ପୃଥିବୀ ଯେ ଏତେବଡ ଏକ ବିପତ୍ତିରୁ ରକ୍ଷା ପାଇଛି ତାହା ଅନେକ ଜାଣି ଆନନ୍ଦରେ ଅଧିର ହେଉଛନ୍ତି । ଅନେକ ସମ୍ବାଦପତ୍ର ଏ ବିଷୟରେ ଟିକିନିଖି ବିବରଣୀ ପ୍ରଦାନ କରିଛନ୍ତି । ଆଜି ସବୁଆଡେ ଆନନ୍ଦ ଉଲ୍ଲାସ, କୋଳାହଳ । ଏ ପ୍ରକାର ଏକ ଭୟଙ୍କର ବିପତ୍ତିରୁ ରକ୍ଷା ପାଇଥିବାରୁ ସମସ୍ତେ ସମସ୍ତଙ୍କୁ ଶୁଭକାମନା ଜଣାଉଛନ୍ତି, ଅଜାଣତରେ ଅନେକଙ୍କ ଚକ୍ଷୁରୁ ବୋହୁଛି ଆନନ୍ଦାଶ୍ରୁ । କୋଳାଗ୍ରତ ପୃଥିବୀବାସୀ ଆନନ୍ଦରେ ଆତ୍ମହରା ହୋଇ ବୈଜ୍ଞାନିକମାନଙ୍କର କଠିନ ସାଧୁ ଉଦ୍ୟମକୁ ଶତ ମୁଖରେ ପ୍ରଶଂସା କରୁଛନ୍ତି । ମୃତ ଲକ୍ଷ ଲକ୍ଷ ଲୋକଙ୍କପାଇଁ ଅନୁଷ୍ଠିତ ହେଉଛି ପୃଥିବୀର ବିଭିନ୍ନ ସ୍ଥାନରେ ଶୋକ ସଭା । ସେହିମାନେ ଯେଉଁମାନେ ଅନୁକୂଳ ପାଣିପାଗ ଅବସ୍ଥା ସହି ନପାରି ଆତ୍ମ ତ୍ୟାଗକଲେ ସେମାନଙ୍କ ପରିବାରବର୍ଗଙ୍କୁ ସାହାଯ୍ୟ ସହଯୋଗ କରିବାକୁ ବିଭିନ୍ନ ଦେଶର ସରକାର ନିଷ୍ପତ୍ତି ନେଉଛନ୍ତି । ଏବେ କ୍ରମେ ପୃଥିବୀ ପୃଷ୍ଠର ଉତ୍ତାପ କମିବାରେ ଲାଗିଛି । ଦୂର ଦିଗବଳୟରେ ରାତ୍ରିରେ କରାଳ ରୂପନେଇ ଉଭା ହେଉଥିବା ବୃହତ୍ତ ଧୂମକେତୁର ଆକାର ଏବେ କ୍ଷୁଦ୍ର ହୋଇଗଲାଣି । ଧୂମକେତୁ ସହ ପରମାଣୁ ରକେଟର ସଂଘର୍ଷ ଓ ବିରାଟ ପରମାଣୁ ବୋମାର ବିସ୍ଫୋରଣ ଚିତ୍ର ଇତି ମଧ୍ୟରେ ଦୂରବୀକ୍ଷଣ କେନ୍ଦ୍ର ମାନଙ୍କରୁ ସଂଗୃହୀତ ହୋଇ ଅଣାଗଲାଣି । ସାରା ବିଶ୍ୱବାସୀଙ୍କ ତରଫରୁ ଆଜି ଏକ ସ୍ୱତନ୍ତ୍ର ଉତ୍ସବରେ ସମ୍ମାନୀତ କରାଯିବ ସେହି ମହାନ ବୈଜ୍ଞାନିକମାନଙ୍କୁ ସାରା ବିଶ୍ୱବାସୀଙ୍କ ପକ୍ଷରୁ ଯେଉଁମାନଙ୍କ କାର୍ଯ୍ୟପାଇଁ ଏକ ନୂତନ ପୃଥିବୀର ଚିତ୍ର ଏବେ ଦେଖିବା ସମ୍ଭବ ହୋଇପାରିଲା । ଏଥିପାଇଁ ପ୍ରସ୍ତୁତି କାର୍ଯ୍ୟ ଚାଲିଛି ବହୁଦିନ ଆଗରୁ ଆମେରିକାର କାଲିଫର୍ଣ୍ଣିଆ ସହରରେ ।



# ଆନନ୍ଦ ଉତ୍ସବ ଓ ସଂମ୍ବର୍ଦ୍ଧନା

କାଲିଫର୍ଣିଆର ମାଉଣ୍ଟ ମୋରେର ବିସ୍ତିର୍ଣ୍ଣ ଉପତ୍ୟକା । ଆଜି ଝଲସୁଛି ଏହି ସ୍ଥାନ ସ୍ୱତନ୍ତ୍ର ଭାବେ । କାଲିଫର୍ଣିଆ ବିମାନ ବନ୍ଦରରେ ପ୍ରତି ମିନିଟରେ ପ୍ରାୟ ଗୋଟିଏ ବିମାନ ଓହ୍ଲାଉଛି । ବିଶ୍ୱର ସବୁ ଦେଶର ନେତୃମଣ୍ଡଳୀଙ୍କୁ ଏହି ସମ୍ବର୍ଦ୍ଧନା ଉତ୍ସବରେ ଯୋଗଦେବାକୁ ଅନୁରୋଧ କରାଯାଇଛି ।'ବହୁ ଦେଶର ନେତାମାନେ ପହଁଞ୍ଚିଗଲେଣି । ପୃଥିବୀ ରକ୍ଷା କାର୍ଯ୍ୟକ୍ରମର ଅନ୍ତିମ ବୈଠକ ଆଜି ଯୁକ୍ତରାଷ୍ଟ୍ରର ରାଷ୍ଟ୍ରପତିଙ୍କ ଅଧକ୍ଷତାରେ ଅନୁଷ୍ଠିତ ହୋଇ ଏହି କାର୍ଯ୍ୟକ୍ରମକୁ ସମାପ୍ତ କରାଯିବ । ଜଣେ ଜଣେ କରି ସବୁ ବରିଷ୍ଠ ବୈଜ୍ଞାନିକ ଆସି ଆସନ ଗ୍ରହଣ କରୁଥିଲେ । ବିଭିନ୍ନ ଦେଶର ରାଜନୀତିଜ୍ଞ, ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀଙ୍କ ପାଇଁ ନିର୍ମିତ ହୋଇଛି ସ୍ୱତନ୍ତ୍ର ଆସନ ।

ସକାଳ ୧୦ଟା । ଯୁକ୍ତରାଷ୍ଟ୍ରର ରାଷ୍ଟ୍ରପତି ଆସି ପହଞ୍ଚିଲେ । ସେ ଥିଲେ ଏହି କାର୍ଯ୍ୟକ୍ରମର ଅଧକ୍ଷ । ସମସ୍ତେ ଠିଆହୋଇ ତାଙ୍କୁ ସମ୍ମାନ ଜଣାଇଲେ ତାଙ୍କସହ ଆସୁଥିଲେ ବୈଜ୍ଞାନିକ ରବର୍ଟ, କ୍ୟାପଟେନ ମୁରୀ, ସ୍କଟ ପ୍ରମୁଖ । ସମସ୍ତେ ଆସନ ଗ୍ରହଣ କରିସାରିଲେଣି । ରାଷ୍ଟ୍ରପତି ସମସ୍ତେ ଦଣ୍ଡାୟମାନ ହୋଇ ଯେଉଁ ମହାନ ବ୍ୟକ୍ତିଙ୍କପାଇଁ ଆଜି ଏହି କାର୍ଯ୍ୟକ୍ରମ ସଫଳ ହୋଇଛି, ପୃଥିବୀ ପୁନରଜନ୍ମ ପାଇଛି ସେହି ମହାନ ବୀର ବୈଜ୍ଞାନିକ ଦମ୍ପତି ଡେଭିଡ୍ ଓ ତାଙ୍କ ପତ୍ନୀ ରୋଜିଙ୍କୁ ପୃଥିବୀବାସୀ ହରାଇ ଥିବାରୁ ଏବଂ ସେମାନେ ସମସ୍ତେ ପୃଥିବୀବାସୀଙ୍କ ଜୀବନ ରକ୍ଷାପାଇଁ ନିଜ ଜୀବନ ଉତ୍ସର୍ଗ କରିଥିବାରୁ ତାଙ୍କ ସ୍ମୃତି ପ୍ରତି ସମସ୍ତେ ସମ୍ମାନ ପ୍ରଦର୍ଶନକରି ଦଣ୍ଡାୟମାନ ହେବାକୁ ଓ ଆତ୍ମାର ସଦଗତି ପାଇଁ ପ୍ରାର୍ଥନା କରିବାକୁ ନିବେଦନ କଲେ । ସମଗ୍ର ସଭାମଣ୍ଡପରେ ଦେଖାଗଲା ଏକ ଶୋକାକୁଳ ଅବସ୍ଥା । ସଭାସ୍ଥଳରେ ସ୍ଥାନ ପାଇଥିବା ଡେଭିଡ୍ ଓ ରୋଜିଙ୍କ ଯୁଗଳ ଫଟୋଚିତ୍ରରେ ଅନେକ ବିଶ୍ୱନେତା ପୁଷ୍ପମାଲ୍ୟ ପ୍ରଦାନକରି ସମ୍ମାନ ପ୍ରଦର୍ଶନ କରୁଥିଲେ । ତାଙ୍କୁ ଦିଆଗଲା ମରଣୋତ୍ତର ବିଶ୍ୱର ସର୍ବଶ୍ରେଷ୍ଠ ବୀର ବୈଜ୍ଞାନିକଙ୍କ ସମ୍ମାନ । ରାଷ୍ଟ୍ରପତି କହିଲେ ଏହି ସମ୍ମାନ

ପୂର୍ବରୁ କେହି ପାଇ ନାହାଁନ୍ତି କି ଭବିଷ୍ୟତରେ ପାଇବେ ନାହିଁ । ଡେଭିଡ୍‌ଙ୍କ ଶେଷ କେଇ ପଦ କଥା ତାଙ୍କର ସ୍ମୃତିକୁ ଆସିଯାଉଥିଲା । ସେ ସେହି କେତେପଦ କଥା ମନେପକାଉ ପକାଉ ଡେଭିଡ୍ ତାଙ୍କ ଉପସ୍ଥିତରେ ଏକ ଡାଏରୀ ରବର୍ଟଙ୍କୁ ଦେଇଥିବା କଥା ମନେପକାଇଲେ । ସେ ନିକଟରେ ବସିଥିବା ବୈଜ୍ଞାନିକ ରବର୍ଟ ଷ୍ଟୋହେଲଙ୍କୁ ସେହି ଡାଏରୀରେ କଣ ଅଛି ତାହା ପ୍ରକାଶ କରିବାକୁ ଅନୁରୋଧ କଲେ । ରବର୍ଟ ମଧ ତାହା ଚାହୁଁଥିଲେ । ସାଧାରଣରେ ଡେଭିଡ୍‌ଙ୍କ ଶେଷ କେତେଧାଡି ଲେଖା ପଢ଼ିବାକୁ ସେ ସୁଯୋଗ ପାଇଥିବାରୁ ନିଜକୁ ଧନ୍ୟ ମନେକରି ଦଣ୍ଡାୟମାନ ହେଲେ ।

ଏକ ଛୋଟ ଡାଏରୀ । ରବର୍ଟ ଜରୀ କାଗଜରେ ଗୁଡାଯାଇଥିବା ଏହି ଡାଏରୀ ଖୋଲିଲେ । ସମସ୍ତଙ୍କ ମଧରେ ଅନୁସନ୍ଧିତ୍ସା, ସ୍ୱତନ୍ତ୍ର ଉଦବେଳନ କଣ ଅଛି ଏହି ଡାଏରୀ ଭିତରେ । ପୃଥିବୀ ରକ୍ଷାର ପ୍ରମୁଖ ବୈଜ୍ଞାନିକ ଡେଭିଡ୍ କଣ ଲେଖିଛନ୍ତି ତାଙ୍କ ଶେଷ ଡାଏରୀରେ ।

ରବର୍ଟ ସେହି ଡାଏରୀ ଖୋଲି ଆରମ୍ଭ କଲେ - ଡେଭିଡ୍ ଲେଖିଥିଲେ ।

"ମୋର ପ୍ରିୟ ପୃଥିବୀବାସୀ ।

ସମସ୍ତଙ୍କୁ ମୋର ଶୁଭ କାମନା । ମୁଁ ଜାଣେ ଯେ ଆପଣମାନଙ୍କ ଆଗରେ ମୋର ଏହି ଲେଖା କେଇପଦ ପଢ଼ା ଯାଉଥିବାବେଳେ ମୁଁ ଓ ମୋ ପତ୍ନୀ ହୁଏତ ଆପଣମାନଙ୍କ ନିକଟରେ ନ ଥିବୁ । ମାତ୍ର ମୁଁ ନଥିଲେ ମଧ ଆପଣମାନେ ଯଦି ସୁଖ ଶାନ୍ତିରେ ବସବାସ କରିପାରୁଥିବେ ତେବେ ମୁଁ ପରମ ଶାନ୍ତି ଲାଭ କରିବି ।

ମୁଁ କ୍ଲାନ୍ତ, ଶ୍ରାନ୍ତ । ବିଶ୍ରାମ ହିଁ ମୋର ଏକାନ୍ତ ଲୋଡା । ପୃଥିବୀ ଯେ ଧୂମକେତୁ ମୁହଁରୁ ରକ୍ଷାପାଇବ ଏହା ନିଶ୍ଚିତ । କିନ୍ତୁ ଏହାର ମୁଖ୍ୟ କର୍ମକାର ହେଲେ ଆପଣଙ୍କ ଆଗରେ ଉପସ୍ଥିତ ବରିଷ୍ଠ ବୈଜ୍ଞାନିକ ବୃନ୍ଦ । ଯେଉଁମାନେ ଦିନରାତ୍ରି ଅଖିଆ ଅପିଆ ନିଷ୍ଠାପରଭାବେ କାର୍ଯ୍ୟ କରିଛନ୍ତି । ମୋର ଏହି କାର୍ଯ୍ୟରେ ବିଶେଷ ଅବଦାନ ନାହିଁ । ସେହିମାନେ

ହିଁ ପୃଥିବୀ ରକ୍ଷାର ମୂଳ ସୂତ୍ରଧର । ତେବେ ମୁଁ ଆଜି ପରମ ଆନନ୍ଦିତ ଯେ ପୃଥିବୀ ଆଜି ଦୁଇଟି ବୃହତ୍ତ ବିପତ୍ତିରୁ ରକ୍ଷା ପାଇଯାଇଛି । ଗୋଟିଏ ହେଉଛି ଧୂମକେତୁ ମୁହଁରୁ ଓ ଅନ୍ୟଟି ହେଉଛି ପରମାଣୁ ଅସ୍ତ୍ର ମୁହଁରୁ । ପରମାଣୁ ଅସ୍ତ୍ରପାଇଁ ମଣିଷର ଗର୍ବ ଆଜି ଧ୍ୱଂସ ପାଇଛି । ପୃଥିବୀ ପୃଷ୍ଠରେ ୟୁରାନିୟମ ଭଳି ଧ୍ୱଂସକାରୀ ପରମାଣୁ ବୋମା ତିଆରିପାଇଁ ଯେତେ ପଦାର୍ଥ ମହଯୁଦ ଥିଲା ତାର ଶତକଡା ୭୦ ଭାଗ ପୃଥିବୀ ରକ୍ଷା କାର୍ଯ୍ୟକ୍ରମରେ ଖର୍ଚ୍ଚ ହୋଇଯାଇଥିବାରୁ ବୋଧହୁଏ ଆଗାମୀ ଦିନରେ ପୃଥିବୀ ଏକ ପରମାଣୁ ମୁକ୍ତ ଅଞ୍ଚଳରେ ପରିଣତ ହେବ । ପ୍ରଳୟ ସୃଷ୍ଟିକାରୀ ପରମାଣୁ ବୋମା ତିଆରି କରିବା କାର୍ଯ୍ୟରେ ଆଉ କୌଣସି ଦେଶ ଭବିଷ୍ୟତରେ ଆଗେଇ ପାରିବେ ନାହିଁ । ଏହା ହିଁ ସବୁଠାରୁ ମୋ ପାଇଁ ଆତ୍ମତୃପ୍ତି । ଏହା ଦ୍ୱାରା ଭବିଷ୍ୟତର ପୃଥିବୀ ଏକ ଶାନ୍ତିର ଅଞ୍ଚଳରୂପେ ବିବେଚିତ ହେବ ବୋଲି ଆଶା କରୁଛି ।

ମୋର ଶେଷ ଅନୁରୋଧ । ମୋର ପତ୍ନୀ ବିଚରା ମୋ ପାଇଁ ପ୍ରାଣ ବିସର୍ଜନ କରିଛନ୍ତି । ତାଙ୍କୁ ମଧ ମୋ ସହିତ ଏକାଠି କବର ଦେବେ । ହଁ ତୁଙ୍ଗସ୍କା ଉତ୍‌କ୍ଷେପଣ କେନ୍ଦ୍ର ଯେଉଁଠାରେ ମୋର ଶେଷ କେତେଦିନ କଟିଛି ସେହି ଜନମାନବ ଶୂନ୍ୟ ଅଞ୍ଚଳରେ ଯଦି ପାରନ୍ତି ଆମ ଦୁହିଁଙ୍କର ପ୍ରତିମୂର୍ତ୍ତି ଯୋଡିଏ ନିର୍ମାଣ କରିବେ । ଏହି ପ୍ରତିମୂର୍ତ୍ତି ଖୋଲା ସ୍ଥାନରେ ରହିବ ଏବଂ ସେଠାରେ ଧୂମକେତୁ ସଂଘର୍ଷ ସଂପର୍କରେ ଉଲ୍ଲିଖିତ ହେବ । ଏହା ହିଁ ହେବ ମୋ ପାଇଁ ପୃଥିବୀବାସୀଙ୍କର ସ୍ନେହ ଶ୍ରଦ୍ଧା । ହିଂସା, ଦ୍ୱେଷ ଭୁଲି ସମଗ୍ର ପୃଥିବୀବାସୀ ଏକ ବିଶ୍ୱର ମନନେଇ ଚଳନ୍ତୁ ଠିକ ଧୂମକେତୁ ସଂଘର୍ଷ ସମୟରେ ଯେଭଳି ପୃଥିବୀ ଗୋଟିଏ ରାଷ୍ଟ୍ରରେ ପରିଣତ ହୋଇଥିଲା - ଏହା ହିଁ କାମନା କରୁଛି ।

ସ୍ୱାକ୍ଷର - ଡେଭିଡ୍ ଏମ.''

ଏକା ନିଶ୍ୱାସକେ ପଢ଼ିଯାଇଥିଲେ ରବର୍ଟ ଡେଭିଡ୍‌ଙ୍କର ଶେଷ କେଇପଦ ଲେଖାକୁ । ସେହି ମହାନ ଆତ୍ମାପ୍ରତି ସମ୍ମାନ ଦିଆଯାଇ ଉପସ୍ଥିତ ସମସ୍ତ ରାଷ୍ଟ୍ରମୁଖ୍ୟ ସେଦିନ ପରମାଣୁ ଅସ୍ତ୍ରଶସ୍ତ୍ର ଉତ୍ପାଦନ ସେହିଦିନଠାରୁ ପୃଥିବୀରେ ବନ୍ଦ କରାଯିବ ବୋଲି ନିଷ୍ପତ୍ତି ନେଲେ । ଅନ୍ୟ ବୈଜ୍ଞାନିକମାନଙ୍କୁ ଦିଆଗଲା ରାଜକୀୟ ସମ୍ମାନ, ସମ୍ବର୍ଦ୍ଧନା ।

## ଡୁଙ୍ଗସ୍କାର ସାଗରବେଳା

ଡୁଙ୍ଗସ୍କାର ବରଫ ଆଚ୍ଛାଦିତ ସାଗରବେଳାଠାରୁ ଅନତୀ ଦୂରରେ ପ୍ରତିଷ୍ଠିତ ହେଲା ଡେଭିଡ୍ ଦମ୍ପତିଙ୍କର ସୁ ଉଚ୍ଚ ବ୍ରୋଞ୍ଜ ପ୍ରତିମୂର୍ତ୍ତି । ତାଙ୍କ ଶେଷ ଇଚ୍ଛା ଅନୁସାରେ ଏହି ପ୍ରତିମୂର୍ତ୍ତି ଖୋଲା ରଖାଗଲା ଓ ତା ତଳେ ଲିପିବଦ୍ଧ କରାଗଲା ମାନବ ସଭ୍ୟତାର ପୁନ ସୃଷ୍ଟିର ଇତିହାସ । ପ୍ରତ୍ୟେକ ବର୍ଷ ଜାନୁଆରୀ ୧ ୨ ତାରିଖରେ ଏଠାରେ ଏକତ୍ରିତ ହୁଅନ୍ତି ପୃଥିବୀର ଅନେକ ଦେଶର ନେତୃବୃନ୍ଦ, ବୈଜ୍ଞାନିକ ଆଉ ସମ୍ମାନ ପ୍ରଦର୍ଶନ କରନ୍ତି ସେହି ମହାନ ବୈଜ୍ଞାନିକ ଦମ୍ପତିଙ୍କୁ । ଆଜି ଯାଏ ଆଉ ପୃଥିବୀରେ ପରମାଣୁ ଅସ୍ତ୍ର ନିର୍ମାଣ ହୋଇନାହିଁ । ହୀରୋସୀମା ଓ ନାଗାସାକୀ ଉପରେ ପଡିଥିବା ପରମାଣୁ ବୋମାର କରାଳ ଚିତ୍ରପରି ମହାକାଶରେ ଧୂମକେତୁ ପରମାଣୁ ବୋମା ବିସ୍ଫୋରଣର ଭୟାନକ ଚିତ୍ର ଏବେ ମଧ ଦେଖୁଛନ୍ତି ପୃଥିବୀବାସୀ ଚ଼ଳଚ଼ିତ୍ରରେ ଆଉ ସେହି ଲୋମହର୍ଷଣକାରୀ ଦୃଶ୍ୟ ଦେଖୁଥିବାବେଳେ ଏହାର ସୃଷ୍ଟିକର୍ତ୍ତା ରବର୍ଟ ଦମ୍ପତିଙ୍କ ପ୍ରତି ନତମସ୍ତକ ହୋଇ ସେହି ମହାନ ଆତ୍ମାପ୍ରତି ଶ୍ରଦ୍ଧା ନିବେଦନ କରୁଛନ୍ତି ।

